# ଶିଶୁ ସାଥୀ

ଲେଖକ

ଶ୍ରୀ ମହେନ୍ଦ୍ର ପଟ୍ଟନାୟକ

ପ୍ରଥମ ମୁଦ୍ରଣ
୧୯୫୬

ପ୍ରକାଶିକା

ଛାତ୍ର-ବୃତ୍ତି-ସଂଘ

ବ୍ରହ୍ମପୁର (ଗଞ୍ଜାମ)

ମୂଲ୍ୟ ଦଶଅଣା ମାତ୍ର

# ସୂଚୀ





# ଅର୍ପଣ

ବାଳୁତ ଚରିତ "ଶିଶୁ ସାଥୀ"
ଏକତ୍ରି ଗ୍ରଥିତ ନାନା ଜାତି ।
ଫୁଟିତ କୁସୁମ ମନୋହର
କର ଶିଶୁଗଣ ସମାଦର ।
ଜୀବନ ଚରିତ ଦରପଣ
ସାଦରେ କରୁଛି ଅରପଣ;

କୁମୀ ବମୀ ଦୁର୍ଗା ଶିବ ବନ୍ଧୁ ମୋର
ଜଗତପାକର କୁମାରୀ କୁମାର
ଦେଖ ଦରପଣେ ଅମର ଜୀବନ
ଅମର କୁସୁମ କର ଆହରଣ ।

ଲେଖକ—

# ମାଗୁଣି

ମୋର କେତେକ ସାଥି ସାଙ୍ଗ ଭପ୍ପା ମତେ ଇମିତି ଖଣ୍ଡେ ପୋଥି ଲେଖିବାକୁ ଅନେକ ଦିନ ହେଲା କହୁ ଆସୁଥିଲେ । ମୋର ଲେଖିବା ପେଇଁ ମନ ବଳଥିଲା । ସମୟ ମାତ୍ର ମିଳୁ ନଥିଲା—ବେଳ ଉଣ୍ଡୁ ଥିଲି । ଏତେ ଦିନେକେ ପଢ଼ଆ ପାଇଲି—ପଢ଼ଆ ଖାଇ ଖାଲି ଉଠିଆ ଚରିବା ବଦଳରେ କଲମ ଧରି ଏଇ କେତେ ଧାଡ଼ି ହାତ ବଳେଇଚି । ଗଞ୍ଜାମ ଜିଲ୍ଲାର ଘୁମୁସର, ଗୁରିଖଡ଼ିସିଙ୍ଗୀ, ତିନଖେମୁଣ୍ଡୀ, ମଞ୍ଜୁଷା, ପୁରୁବଖଣ୍ଡ, ଖଲ୍ଲିକୋଟ-ଆଠଗଡ଼ ହେଉକା ଅଞ୍ଚଳରେ ଘରେ ବାହାରେ ଓଡ଼ିଆ ଲୋକେ ଯୋ ଭାଷାରେ କଥା ବାରତା ହୁଅନ୍ତି, ସେଇ ଭାଷାରେ ମୁଁ ଏଇ କଥା ସାତୋଟି ଲେଖିଚି ।

ଆଧୁନିକ ପଣ୍ଡିତମାନଙ୍କ ଲେଖାରେ ସଂସ୍କୃତ ଶବ୍ଦମାନ ଆମ ଦେଶୁଆ ଗାଉଁଲିଆ ପଦଗୁଡ଼ାକୁ ଗିଳି ପକଉଚି, ନ ଗିଳିଲେ ହେଲେ ଯୋ' ଅଗାଡ଼ି ଚରଗଡ଼ି ପରି ବାନ୍ଧୁ, ଉଡ଼େଇ, ଫିଙ୍ଗି, ଫୋପାଡ଼ି ତାର ଉପରେ—ପଡ଼ି ମଡ଼େଇ ବସୁଚି, ସେଇଥିରୁ ତାକୁ ବଞ୍ଚେଇବାକୁ, ତାକୁ ଉଧାରିବାକୁ ମୁଁ ସେଇ ଗାଉଁଲି ଭାଷାରେ ଟିକି ପିଲାଙ୍କ ପାଁରେ ଏଇ "ଶିଶୁ-ସାଥୀ" ଲେଖିଲି । ଏ ଭାଷା ଅଣପାଠୁଆଙ୍କ ଭାଷା ବୋଲି ପାଠୁଆଏ ଯଦି ଇଆଡ଼କୁ ନଜର ନ ପକେଇବେ, ଇଆଡ଼କୁ ଆଦର ନ କରିବେ, ତେବେ ଦେଶର ଏ ଘରୋଇ ଭାଷା ଉଧେଇବ କିମିତି ? ପାଠୁଆଙ୍କ କତିରେ ଏତିକି ମାଗୁଣି, ଲେଖନକାରର ଦୋଷ ନ ଧରିବେ, ଶୁଦ୍ଧ ଅଶୁଦ୍ଧ ମିଶେଇ ଗାଇବେ ।

ଯା ଦେଇଛ ତା ଦେଇଛ ପିଲେ ଯଦି ଏହାକୁ ପଢ଼ିବେ ବୁଝିବେ, ଆଉ ଏହା ପଢ଼ିଲେ ବୁଝିଲେ ଯଦି ତାଙ୍କର ହିତ ହେବ ମୋର ହାତବଳେଇବାଟା ସାର୍ଥକ ମଣିବ ।

ବଡ଼ଗଡ଼
୧୮୫୪ ଶକାବ୍ଦ
ବୈଶାଖ କୃଷ୍ଣ
ଚତୁର୍ଥୀ ରବିବାର

ଲେଖକ

# ମୁଖବନ୍ଧ

ଶ୍ରୀମାନ୍ ମହେନ୍ଦ୍ର ପଟ୍ଟନାୟକଙ୍କ "ଶିଶୁ ସାଥୀ" ପୁସ୍ତିକାର ପାଣ୍ଡୁଲିପି ଖଣ୍ଡି ସେ ମୋ ନିକଟକୁ ପଠାଇଥିଲେ । ଯେଉଁ ଭାଷା ପିଲମାନେ ଘରେ ଶୁଣନ୍ତି ଓ କହନ୍ତି ମହେନ୍ଦ୍ର ବାବୁ ସେହି ଭାଷାରେ ଗୁଡ଼ିଏ ଗଳ୍ପ ଲେଖି ଅଛନ୍ତି । ଘରୋଇ ଭାଷା (Homely language)କୁ ଇତର ଭାଷା (Slang)ରୁ ବାଛି ତାହା ପ୍ରୟୋଗ କରିବା ପାଇଁ ଯେଉଁ କୃତିତ୍ୱ ଲୋଡ଼ା ତାହା ମହେନ୍ଦ୍ର ବାବୁ ପ୍ରୟୋଗ କରିଅଛନ୍ତି ଓ ଯେଉଁଠାରେ ସଂସ୍କୃତ ଶବ୍ଦମାନଙ୍କ ସ୍ଥାନ ଅଧିକାର କରିବାକୁ ଉଦ୍ଦେଶ୍ୟରେ ଘରୋଇ ଶବ୍ଦମାନ ଅଛି ସେ ସ୍ଥଳରେ ସେ ଘରୋଇ ଶବ୍ଦମାନ ଯୋଜନା କରିଅଛନ୍ତି ।

ଏହା ସୁକୁମାରମତି ବାଳକ ବାଳିକାମାନଙ୍କର ସୁଖ ପାଠ୍ୟ ହେବ ବୋଲି ଆଶା କରାଯାଏ । ଅବଶ୍ୟ ଘରୋଇ ଭାଷା ପ୍ରୟୋଗରେ ଗୋଟିଏ ଅଳଂଘନୀୟ ଅସୁବିଧା ଅଛି । ଘରୋଇ ଭାଷା ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଅଟେ ।

ଏପରି ସ୍ଥଳେ ଗଞ୍ଜାମ ଅଞ୍ଚଳର ଘରୋଇ ଭାଷା ବ୍ୟବହାର ହେଲେ ସେ ଅଞ୍ଚଳ ପ୍ରଚଳିତ ଗୁଡ଼ିଏ ପ୍ରାଦେଶିକ (Dialectical) ଶବ୍ଦ ଏଥିରେ ରହି ଯିବାର ଅବଶ୍ୟମ୍ଭାବୀ, କିନ୍ତୁ ତାହା ଯଥାଶକ୍ତି ପରିହାର କରି ସର୍ବାଞ୍ଚଳବୋଧ ଭାଷା ବ୍ୟବହାର କରିବାକୁ ଲେଖକ ଯେ ବିଶେଷ ଚେଷ୍ଟା କରିଅଛନ୍ତି, ଏଥିରେ ସନ୍ଦେହ ନାହିଁ ।

ଏ ପୁସ୍ତିକାର ଭାଷା ଯଥାଶକ୍ତି ସରଳ ଓ ଦୁର୍ବୋଧ-ଜଟିଳ-ସଂସ୍କୃତ-ଶବ୍ଦାଡମ୍ବରମୁକ୍ତ, ଏହା ସମସ୍ତେ ସ୍ୱୀକାର କରିବେ ।

ଏ ପୁସ୍ତିକା ଖଣ୍ଡି ଶିଶୁ ସମାଜରେ ଆଦୃତ ହେଲେ ଲେଖକଙ୍କର ଶ୍ରମ ସଫଳ ହେବ ।

କଟକ
୨୧-୫-୧୯୩୨

ଗୋପାଳଚନ୍ଦ୍ର ପ୍ରହରାଜ

# ବାପାଙ୍କ ବୋଲ୍ ମାନ

ରାତି ପାହିଲେ ରାମଚନ୍ଦ୍ର ରଜା ହେବେ । ବଡ଼ ପୁଅ ଗାଦି ଚଢ଼ିବେ, ସେଥିପାଇଁ ବୁଢ଼ା ରଜା ଦଶରଥ, ଯୋ'ଠିକି ଯାହା ଲୋଡ଼ା ସବୁ ଯୋଗାଡ଼ କରି ଦେଇଚନ୍ତି । ବଡ଼ପୁଅ ରାମଙ୍କୁ ରାଇଜ ଭାରଦେଇ ଶାନ୍ତିରେ ଶେଷ ଜୀବନଟା କଟେଇବାକୁ ଦଶରଥ ଥିର କରିଚନ୍ତି । କୌଶଲ୍ୟାଙ୍କର ବଡ଼ ଆନନ୍ଦ, ରାତି ପାଇଲେ ପୁଅ ରଜା ହେବ । ସୀତାଙ୍କର ଭାରି ମନ ଫୁଲୁଣା, ଗୁଣର ଗିରସ୍ତ ମୁକୁଟ ପିନ୍ଧି ରାଜ ଗାଦିରେ ବସିବେ, ଆଉ ତାଙ୍କ କଡରେ ସେ ରାଣୀ ହୋଇ ବସିବେ । ଅଯୋଧ୍ୟା ରାଜ ନଅରରେ ଆନନ୍ଦ ଉଚ୍ଛୁଳି ଉଠୁଚି—ନାନା ଆଡ଼େ ନାନା ଉତ୍ସବ ଚାଲିଚି । ଭାଇ ରଜା ହେବେ ଜାଣି ଲକ୍ଷ୍ମଣଙ୍କର ରାତି ନିଦନାହିଁ—କେମିତି ରାତି ପାହିବ, ରାମଙ୍କ ପରି ଗୁଣରଭାଇ କେମିତି ରଜା ବେଶରେ ଗାଦିରେ ବିଜେକଲା ବେଳେ ସେ ଠିଆ ହୋଇ ଚଅଁର ପକେଇବେ, ଲଖଣଙ୍କର ଏଇ ଚିନ୍ତା ।

ଲକ୍ଷଣଙ୍କ ମା'ଆ ସୁମିତ୍ରା ଆନନ୍ଦରେ ଭାସୁଚନ୍ତି । ନଅରର ପୋଇଲି ପରିବାରୀ ଯେଝା କାମରେ ଆନନ୍ଦରେ ମାତିଚନ୍ତି । ହୁଳହୁଳିରେ ନଅର ଉଚ୍ଛୁଳୁଚି ।· ପରଜାପାଟକ ଗାଆଁଗଣ୍ଡାରୁ

ଆସି ରଜାଙ୍କର ସିଂହଦୁଆରଠେଁ ଜଗି ରହିଚନ୍ତି । ରାତିଟା ଦିନ ପରି ଲାଗୁଚି । ରାତି ପାହିଲେ ରାମ ରାଇଜର ଶୁଭ ପର୍ବ—ଏଇ ଆନନ୍ଦ ଦୋଳିରେ ବସି ଅଯୋଧ୍ୟାବାସିଏ ସତେ ଯିମିତି କ ପହଁଚୁଚନ୍ତି । ଅଯୋଧ୍ୟାରାଇଜ ଯାକ ଆନନ୍ଦର ଢେଉ ଖେଳୁଛି । ସେ ଆନନ୍ଦର କଥା ତୁଣ୍ଡରେ କହିହେବ ନାହିଁ ।

ଏତେ ଆନନ୍ଦ ଭିତରେ ନହରର ଗୋଟେ ଅନ୍ଧାର କୋଣରେ ଜଣେ ମାତର ମୁଣ୍ଡବାଳ ମୁକୁଳା କରି ସକେଇ ସକେଇ କାନ୍ଦୁଚି । ସେ ଆଉ କେହି ନୁହେ, କଇକେଇ । କଇକେଇଙ୍କି ଏ ବୁଦ୍ଧି ଶିଖେଇଲା ମନ୍ଥରା । ଏ ମନ୍ଥରୀ ବଡ ନଟହିଟୀ, ନଗଲବାଟୀ, ଘରଭଙ୍ଗେଇ । କଇକେଇ ରାମଙ୍କୁ ଆପଣା ପୁଅ ଭରତ ଶତ୍ରୁଘନଠୁଁ ବଳି ଅଧିକ ଭଲ ପାଉଥିଲେ । ମନ୍ଥରୀ କ ମନ୍ତର ପଢ଼େଇଲା କେ ଜାଣି ଏକା ରାତିରେ କଇକେଇ ବାଇଆଣୀ ହେଲେ ।

ଦଶରଥ ତ ବଡ଼ ସରଳ ରଜା । ଯାହା ସତ କରିଥିବେ ତାହା—ସତ ବୋଇଲେ ମରିଯିବେ—ସତ ବିନୁ ମିଛ ଜାଣନ୍ତି ନାହିଁ, ମାଇକନାର ଏତେ କୁଟୁକୁଟୀ ବୁଦ୍ଧି, ଏତେ ପେଟପାପ କଥା ବୁଝିବେ କାହୁଁ ?

ମନ୍ଥରୀ ଆସି ଦଶରଥଙ୍କୁ ଜଣେଇଲା ଯେ କଇକେଇ ମାଟିରେ ଲୋଟି କାନ୍ଦୁଚନ୍ତି । ଦଶରଥ ତ ବଡ଼ ଦୟାଳୁ, ସିନେହ ବୋଇଲେ ଜୀବନ ମୂରୁଛି ଦେବେ । ରାଣୀ କଇକେଇ କାନ୍ଦୁଚନ୍ତି ଶୁଣି ସେ ଆଉ ଥୟ ଧରି ରହନ୍ତେ କେତେକେ ?—ଏକା ନିଶ୍ୱାସରେ ଧାଇଁଲେ କଇକେଇଙ୍କ ଉଆସକୁ—ଯାଇ ଦେଖିଲେ

ତାଙ୍କର ଏତେ ସିନେହର ରାଣୀ କଇକେଇ ଭୂଇଁରେ ଲୋଟି, ଧୂଳିରେ ଗଡ଼ କାନ୍ଦୁଚନ୍ତି । ଭାଙ୍ଗିଗଲେ ଗଢ଼ିଦେବା ପାଇଁ, ହଜିଗଲେ ଖୋଜିଦେବା ପାଇଁ ରଜା ପର ରଜା ଦଶରଥ ରଜା ଥାଉ ଥାଉ କଇକେଇ ଆଜି ସୁନାର ଦେହକୁ ମାଟିରେ ଲୋଟେଇ କାନ୍ଦୁଚନ୍ତି !

ରାଜ ପାଇଲେ ରାମ ରଜା ହେବେ । କଇକେଇଙ୍କର ଆନନ୍ଦ ହେବା କଥା, କିନ୍ତୁ ସେ ତଳେ ଲୋଟି କାନ୍ଦୁଚନ୍ତି । ତାଙ୍କ ମୁଣ୍ଡ ବାଳ ମୁକୁଳା—ସୁନା ପର ଦେହ ଧୂଳିଆ । ଦେହର ଅଳଙ୍କାର ଭୂଇଁରେ ଛିଂଚ୍ଛି ହୋଇ ପଡ଼ିଚି, ପିନ୍ଧିବା ଲୁଗାର ଯତନ ନାହିଁ । ତାଙ୍କର ଏବେଶ ଦେଖି ଦଶରଥ ଚମକିଗଲେ—ସେଇକ୍ଷଣି ଭରସି କିଛି ପଚାରି ପାରିଲେ ନାହିଁ—ଘଡ଼ିଏ ଉଭା ହୋଇ ଧୀର କଅଁଳ କଥାରେ ଡ଼ାକିଲେ "କଇକେଇ !"

କଇକେଇ ମୁହଁ ଟେକି ଚାହିଁଲେ ନାହିଁ—ମୁଣ୍ଡ ପୋତି ଆଉରି ସକେଇ ସକେଇ କାନ୍ଦିଲେ । ମନ୍ଥୁଡ଼ୀ କଡରେ ଠିଆ ହୋଇ ମନେ ମନେ ଡ଼ଗ ମେଲୁଥାଏ "ସକେଇ କାନ୍ଦଇ ବାରଆଡ଼େ, ଲୁହ ପଡ଼ଯାଇ ଚାରଆଡ଼େ ।"

ଦଶରଥ କେତେ ବୋଧିଲେ, କଇକେଇ ବୋଧ ହେଲେ ନାହିଁ; କେତେ ସମଜେଇଲେ ସମଜିଲେ ନାହିଁ, ଯେତେ ବୁଝେଇଲେ ହେଲେ ଅବୁଝାଣୀ ହୋଇ ଶୋଇ ରହିଲେ । ଚେଇଁ ଶୋଇବ ଯିଏ, ତାକୁ ଉଠାଇବ କିଏ ?

ଦଶରଥ ହାତ ଧରି ବହୁତ କାକୁସ୍ତ ହୁଅନ୍ତେ, ଫଅଁ ଫଅଁ ନିଶ୍ୱାସ ମାରି ତଇଁ ତଇଁ ହୋଇ କଇକେଇ କହିଲେ—"ତମେ

ଯୁଦ୍ଧରେ ଘାଉଡ଼ ହେଲାବେଳେ ମୁଁ ତମର ସେବା କରିଥିଲି । ମୋ ସେବାରେ ତମେ ସେହି ଘାଉଡ଼ରୁ ଉଧେଇଲା ପରେ କହିଥିଲ ମତେ ଦୁଇଟା ବର ଦେବାକୁ । ବର ମୋର ଯେବେ ଲୋଡ଼ା ସେବେ ମାଗିବି ବୋଲି ମୁଁ କହିଥିଲି । ଏବେ ମୋର ସେଇ ବର ଦି'ଟା ବଡ଼ ଲୋଡ଼ା—ନ ଦେଲେ ନ ଚଳେ । ତମେ ସତ-କରିଚ, ବଚନ କରିଚ—ଦବନି ମୋର ବର ଦୁଇଟା ଏଇକ୍ଷଣି ଦିଅ ।"

ଦଶରଥ କହିଲେ "କି କଇକେଇ । ଏଇଥିପାଇଁ ହଟି ବସିଚ ? ଏ ଛାର ବର ଦୁଇଟା ପାଇଁ ଏଡ଼େ ରୁଷା, ଏଡ଼େ କାନ୍ଦଣା ! ମାଗ ଯୋ' ବର ମାଗୁଚ ମାଗ' ଦବା ପାଇଁ ମୋର ଟିକିଏ ହେଲେ କସର ନାଇଁ କି କଟିକଟି ନାଇଁ । ଯାହା ମାଗିଥିଲେ ତାହା ଆଣି ଦେଇଥାନ୍ତି, ଯାହା ଲୋଡ଼ିଥିଲେ ତାହା ବଢ଼ାଇଥାନ୍ତି ! ତମକୁ ମୁଁ କି ଉଣା କରିଚି ଯେ, ଏ ଛାର ଦି'ଟା ବର ପାଇଁ ଏତେ ମନ ମାରି, ମୁହଁ ଶୁଖେଇ ଏ ଅଳିଆ ଅସଜଡ଼ା କୋଣରେ ଚମ୍ପା ଫୁଲ ପରି ଦିହଟାକୁ ଧୂଳିଧୂସର କରି ପଡ଼ିଚ, କହିଲ ! ମାଗ, ଯାହା ମାଗୁଚ ମାଗ—ସତ୍ୟ କରିଚି ଯେବେ ଦେବାକୁ କି ଅମଙ୍ଗ ହେବି ?"

ତହୁଁ କଇକେଇ ସାହସ ବାନ୍ଧିଲେ—ହସ ହସ ମୁହଁରେ ହେଲେଇ ହେଲେଇ ହୋଇ କହିଲେ "ମହାରାଜା, ସତ୍ୟ କରିଚ ନିଶ୍ଚେ ବଚନ ରଖି ମୋର ବର ଦୁଇଟା ଦିଅ । ଗୋଟେ ବରରେ ରାମ ଚଉଦ ବରଷ ବଣକୁ ଯାଉ, ଆରଟିରେ ମୋ ପୁଅ ଭରତ ରଜା ହେଉ—"

କଇକେଇଙ୍କ କଥା ନ ସରୁଣୁ ବୁଢ଼ା ରଜା ଦଶରଥଙ୍କର ଚେତା ବୁଡ଼ିଗଲା । ଅଚେତ ହୋଇ ପଡ଼ିଗଲେ, ଏ ଖବର

ନମିଷକେ ନଗରର ବାହାର ଘୁରିଆଡ଼େ ଖେଳିଗଲା । ନଗରର ଲୋକେ ଧାଇଁ ଆସି ଦେଖିଲେ କଇକେଇଙ୍କ ଉଆସରେ ମହାରଜା ଦଶରଥ ଅଚେତ ହୋଇ ପଡ଼ିଚନ୍ତି । କ୍ଷଣକ ଲାଗି ନଗରରେ କାନ୍ଦବୋବାଳି ପଡ଼ିଗଲା ।

ଏ ଖବର ଶୁଣି ସବୁ ରାଣୀଯାକ ଜମା ହୋଇଗଲେ । ରାମ ଲଖଣ ବି ଧାଇଁ ଆସି ପହଞ୍ଚିଗଲେ । ପୋଇଲି ପରିବାରି ଆସି ରୁଣ୍ଡ ହୋଇଗଲେ । ଭରତ ଶତ୍ରୁଘନ ତ ମାମୁଁ ଘରେ ଥିଲେ । ରଜାଙ୍କୁ ବଞ୍ଚାବଞ୍ଚି, ପାଣି ଛିଞ୍ଚାଛିଂଚ ଲାଗିଗଲା । ଦଶରଥ ଅନେକ କ୍ଷଣ ପରେ ଚେତା ହେଲେ—ଯିମିତି ଚେତା ହେଲେ ସିମିତି ଆଖି ମେଲି ଗୁଣବନ୍ତ ପୁଅ ରାମଙ୍କୁ ଦେଖି କାନ୍ଦ କାନ୍ଦ ହୋଇ କୁଣ୍ଢେଇ ପକାଇଲେ । ଥକି ଥକି ବଡ଼ କଷ୍ଟରେ ଦଶରଥ କହିଲେ—"ବାପ ମୋର କୁଳନନ୍ଦନ ରାମ ! ତୋ ମାଆ କଇକେଇଙ୍କି ମୁଁ ଯୋ' ବର ଦେବାକୁ ସତ୍ୟ କରିଥିଲି, ତାହା ସେ ଆଜି ମାଗି ନେଇଚନ୍ତି । ଗୋଟିକ ବରରେ ତୋର ଚଉଦ ବରଷ ବନବାସ, ଆଉ ଗୋଟିକରେ ଭରତର ରାଜପଣ ।

ଦଶରଥ ଆଉ କିଛି କହିପାରିଲେ ନାହିଁ—ତାଙ୍କ ପାଟି ଫିଟିଲା ନାହିଁ—ତାଙ୍କ ହୃଦରୁ କେବଳ କୋହ ଉଠିଲା । କଉଶଲ୍ୟା, ସୁମିତ୍ରା ଆଖି ଥନ ଥନ କରି ଭୂଇଁରେ ବସିପଡ଼ିଲେ । ରାମଙ୍କ ମୁହଁକୁ ଚାହିଁ ଲଖଣ ମୁଣ୍ଡ ପୋତିଦେଲେ । ପୋଇଲି ପରିବାରି ସମ୍ଭାଳି ନ ପାରି ରଡ଼ି ଛାଡ଼ିଲେ । ଦଶରଥଙ୍କ ଆଗରେ କଇକେଇଙ୍କି କିଛି କହିବାକୁ କାହାରି ସାହସ ହେଲାନାହିଁ—ସମସ୍ତେ ମୁଣ୍ଡରେ ହାତ ଦେଇ ତୁନି ହୋଇ ବସିପଡ଼ିଲେ—କେହି-ହେଲେ ଉଠିସି ଭୁଣ୍ଡ ଫିଟେଇ ପାରିଲେ ନାହିଁ । ମାତ୍ରକ ପୋଇଲିଏ

ମୁହଁ ମୋଡ଼ିଲେ, ଆଉ ରାଣୀମାନେ କଇକେଇଙ୍କି ମନେ ମନେ ଛି ଛି କଲେ ।

ରାମଚନ୍ଦ୍ରଙ୍କ ପରି ପୁଅ କୋଟିକେ ଗୋଟିଏ । ରଜା ଘରେ ଇମିତି ପୁଅର ଜନମ କେଉଁ ଯୁଗରେ କମିତି ଘଟିଲେ ଅବା ଘଟେ । ରାମଚନ୍ଦ୍ର ବାପାଙ୍କ ବୋଲ ମାନିବାକୁ ଆଗ । ବାପାଙ୍କ ବୋଲ ଭାଙ୍ଗିବା ରାମଙ୍କ ଜାତକରେ ନାହିଁ । ବାପଙ୍କ ଆଜ୍ଞା ମୁଣ୍ଡରେ ଘେନି ରାମଚନ୍ଦ୍ର ବଣକୁ ଯିବାକୁ ତିଆର ହେଲେ । ଲଖଣ କହିଲେ "ମୁଁ ଯିବି" । ସୀତା କହିଲେ "ମୁଁ ଯିବି" । ରାମ କେତେ ମନା କଲେ, କିନ୍ତୁ ସୀତା, ଆଉ ଲଖଣ ତାଙ୍କ ମନା ମାନିଲେ ନାହିଁ । ସୀତା କହିଲେ "ତମେ ବଣ ଭିତରେ ପତର କୁଡ଼ିଆରେ ରହିଲେ ମୁଁ ସେଇଠି ତମ ପାଖରେ ରହିବି, ତମେ ଫଳମୂଳ ଖାଇଲେ ମୁଁ ଫଳମୂଳ ଖାଇ ତମରି କଡରେ ରହିବି, ତମେ ଗଛର ବକଳ ପିନ୍ଧିଲେ ମୁଁ ମଧ ଗଛର ବକଳ ପିନ୍ଧି କାଳ କଟେଇବି । ତମ ବିହୁନେ ଏ ଅଯୋଧ୍ୟା ନଅରର ମତେ ବଣର ପତର କୁଡ଼ିଆଠାରୁ ଅସାର ଲଗିବ, ଅସୁଖ ଲଗିବ । ମୁଁ ତମକୁ ଦଣ୍ଡେ ଛାଡ଼ି ରହି ପାରିବି ନାହିଁ । ତମେ ଯୋ'ଆଡ଼େ ତମ ସୀତା ସେଇଆଡ଼େ ।"

ଲକ୍ଷ୍ମଣ କହିଲେ "ମୋ ରାମ ଭାଇ ଯୋ'ଆଡ଼େ ମୁଁ ସେଇ-ଆଡ଼େ । ରାମ ପରି ଗୁଣର ଭାଇଙ୍କି ଛାଡ଼ି ମୁଁ ଏ ନଅରରେ ରାଜଭୋଗ କରିବି ? ଛି ! ଏ ଜୀବନ ଥିଲେ କି ଗଲେ କି ! ମୁଁ ତମେ ସଙ୍ଗେ ସଙ୍ଗେ ଥିବି, ତମ ପାଦ ପଖାଳିବି, ତମ ପାଇଁ ଫଳ ମୂଳ ସାଉଁଟି ଆଣିବି, ଦିନ ରାତି ଧନୁଶର ଘେନି ତମକୁ ଓ ସୀତାଠାକୁରାଣୀଙ୍କି ଜଗିଥିବି, ତମ କୁଡ଼ିଆ ଚାରିପାଖ ବୁଲି ପହରା ଦେଉଥିବି ।"

ଗୁଣର ପୁଅ ରାମଚନ୍ଦ୍ର, ବାପା ଦଶରଥ, ମା କୌଶଲ୍ୟା, ମା କଇକେଇ, ମା ସୁମିତ୍ରାଙ୍କଠୁ ରାମଚନ୍ଦ୍ର ମେଲାଣି ନେଇ ବଇରାଗୀ ବେଶରେ ବଣକୁ ଗଲେ । ତାଙ୍କ ପଛେ ପଛେ ସୀତା ଆଉ ଲକ୍ଷ୍ମଣ ଗୋଡ଼େଇଲେ । ଦଶରଥ ପୁଣି ମୂର୍ଚ୍ଛାଗଲେ । ଅଯୋଧ୍ୟାର ଲୋକେ ଖଣ୍ଡେଦୂର ବାଟ ସାଙ୍ଗରେ ଗୋଡେଇ ଗୋଡ଼େଇ ଯାଇ ରାମ ଲଖଣ ସୀତାଙ୍କୁ ବାହୁଡ଼ାଇ ଆଣି ନ ପାରି ଫେରି ଆଇଲେ । ଏ ଖବର ପାଇ ଭରତ ଶତ୍ରୁଘ୍ନ ମାମୁଘରୁ ଫେରି ଆସି କଇକେଇଙ୍କି ଅନେକ ଗାଳିକଲେ । ଅନେକ ଝିଙ୍କାସିଲେ ଆଉ ରାମଙ୍କୁ ବାହୁଡ଼ାଇ ଆଣିବାକୁ ବଣକୁ ଧାଇଁଲେ । ଭରତ ଯେତେ ବୁଝେଇଲେ ମଧ୍ୟ ରାମ ବାପାଙ୍କ ସତ୍ୟ ଭାଙ୍ଗିଲେ ନାହିଁ—ଶେଷରେ ରାମଙ୍କ କଠଉ ନେଇ ଭରତ ଅଯୋଧ୍ୟାକୁ ଫେରିଲେ ।

ରାମଚନ୍ଦ୍ର ଚଉଦ ବରଷ ବନବାସ କଲେ । ଦିନେ ନୁହେ ଦିଇ ଦିନ ନୁହେ, ବରଷେ ନୁହେଁ କି ଦିଇ ବରଷ ନୁହେଁ ଏକା ପରି ଚଉଦ ବରଷ । ଫଳମୂଳ ଖାଇ, କୁମ୍ଭୀପଟ ପିନ୍ଧି, ଖରା ତରା ଶୀତ କାକରରେ ସୀତା ଆଉ ଲଖଣଙ୍କୁ ନେଇ ରାମଚନ୍ଦ୍ର ପୂରା ଚଉଦ ବରଷ ବଣ ଜଙ୍ଗଲରେ କଟେଇ ଦେଲେ । ଏ ଭିତରେ କେତେ ଦୁଃଖ, କେତେ କଷ୍ଟ, କେତେ ଯେ ଅପମାନ ସହିଲେ ତା'ର ଆଉ ଠିକଣା ନାହିଁ । ଆହା ! ବାପାଙ୍କ ବୋଲ ମାନିବା ପାଇଁ ସିନା ରାମଚନ୍ଦ୍ର ଏତେ ବେଦନା ଏତେ ଦୁଃଖ ସହିଲେ ! ତାଙ୍କ ପ୍ରାଣର ସୀତାଙ୍କୁ ଲଙ୍କାର ରାବଣ ଚୋରି କରି ନେଲା—ରାବଣ ହାତରୁ ସୀତାଙ୍କୁ ଛଡ଼େଇ ଆଣିବାକୁ ଯାଇ ଲକ୍ଷଣଙ୍କଠେଇ ବାଣ ବାଜିଲା ଯେ, ସେ ମରୁ ମରୁ ବଞ୍ଚିଲେ । ଏତେ ଅପମାନ ଏତେ ଦୁଃଖ କିଏ ସହନ୍ତା ?

ରାମ ରାବଣକୁ ମାରି ସୁନା ପରି ଅକଳଙ୍କ ସୀତାଙ୍କୁ ଘେନି ଲକ୍ଷ୍ମଣଙ୍କ ସାଙ୍ଗେ ଅଯୋଧ୍ୟାକୁ ଫେରି ଆଇଲେ । ତେବେବି ତାଙ୍କର ଦୁଃଖ ଗଲା ନାହିଁ । ଲୋକଙ୍କ ସୁଖ ଦୁଃଖର କଥା ଶୁଣିବା ପାଇଁ ରାମଚନ୍ଦ୍ର ଅନ୍ଧାରୀ ରାତେ ହେଇଚନ୍ତି କାନ ପାତି ଶୁଣିଲେ ଯେ, ଧୋବୁଣୀ ବାପ ଘରେ ରାତିଟାଏ ବାସିଥିବା ରହି ଆସିଚି ବୋଲି ଧୋବା ତାକୁ ଗାଳି କରି ଗୁଡ଼ପଥର ଦେବାକୁ ଯାଉଚି, ତାକୁ ବଡ଼ ଅବଗୁଣ ପାଇ ଝିଙ୍ଗାସୁଚି—ଆଉ ଧୋବୁଣୀ ଟାଣ କରି ଧୋବାକୁ କହୁଚି—"ଏ ଅଯୋଧ୍ୟା ରାଇଜର ରାଣୀ ସୀତା ଠାକୁରାଣୀଙ୍କି ରାବଣ ନେଇ ମାସ ମାସ କାଳ ଲଙ୍କାପୁରୀରେ ରଖିଲା ଯେ ସୀତା ଠାକୁରାଣୀଙ୍କର ଜାତିଗଲା ନାହିଁ କି ତାଙ୍କଠେଇ କଳଙ୍କ ଲାଗିଲା ନାହିଁ । ତାଙ୍କୁ ଲଙ୍କାରୁ ଆଣି ଆମ ରଜା ରାମଚନ୍ଦ୍ର କୋଳରେ ବସେଇଲେ, ଆଉ ବାପ ଘରେ ରାତିଟା ରହିଗଲି ବୋଲି ମୋତେ ଗୁଡ଼ପଥର ଦେବାକୁ ବସିଚୁ ?"

ଏହା ଶୁଣି ରାମଙ୍କ ମନ ଖରାପ ହେଲା । ପ୍ରଜାଙ୍କ ମନ ତୋଷିବା ପାଇଁ ସେ ଅକଳଙ୍କ ସୀତାଙ୍କୁ ଲକ୍ଷ୍ମଣଙ୍କ ସାଙ୍ଗରେ ପୁଣି ବଣକୁ ପଠେଇଦେଲେ । ପଠେଇଦେଲେ ସିନା, ତାଙ୍କ ହୃଦ ଦୁଃଖରେ ଦୁଇଁ ହେଇଗଲା । ବାପାଙ୍କ ବୋଲ ମାନିବାକୁ ଯାଇ ରାମଙ୍କର ଏ ସବୁ ଦୁଃଖ ।

ସେ ଯାହାହେଉ ଋଷି ଆଶ୍ରମରେ ସୀତାଙ୍କ ଗରଭରୁ ଲବ କୁଶ ବୋଲି ଜାଆଁଳା ଭାଇ ଦୁଇଟି ଜନମ ହେଲେ । ବାଲ୍ମୀକି ଋଷି ରାମାୟଣ ଗୀତ ରଚିଲେ । ଲବ କୁଶ ସେଇ ରାମାୟଣ ଗୀତ ଗାଇ ସଂସାର ଲୋକଙ୍କୁ ଶୁଣେଇଲେ । ଏଥିରୁ ପିଲାମାନେ ଏହି ଶିକ୍ଷାପାଉଚ **"ଦୁଃଖ ପାଅ ପଛକେ ବାପାଙ୍କ ବୋଲ ମାନ ।"**

# ନିଜ କାମ ନିଜେ କର

[ ୧ [

ଝିମିଟି ଖେଳରୁ ମହାଭାରତ ଯୁଦ୍ଧ । ସିମିତ ଯୁଦ୍ଧ ଆଉ କେବେ ହୋଇନାହିଁ କି ହେବନାହିଁ । ଭୀମ ଦୁଃଶାସନ ସିମିତ ଯୁଝିଲେ ସିମିତ କିଏ କୋ'କାଳେ ଯୁଝିନାହିଁ । ବଡ଼ଭାଇ ଯୁଧିଷ୍ଠିର ବଡ଼ ସୁଧାର—ମଲା ମାଛିକି ମାର ବୋଲିବେ ନାହିଁ । ବଡ଼ ଭାଇ ଯୁଧିଷ୍ଠିର ସିମିତ ଧରମକୁ ମାନି ଚଳନ୍ତି ସାନ ଭାଇ ଭୀମ, ଅର୍ଜୁନ, ନକୁଳ, ସହଦେବ ସିମିତ ଧରମ ବାଟରୁ ତିଳେହେଲେ ଘୁଞ୍ଚନ୍ତି ନାହିଁ । ହେଲେ ଯୁଦ୍ଧ ନ କଲେ ନ ଚଳେ । ନ ଯୁଝିଲେ ଛୁଞ୍ଚି-ମୂନ ସମାନ ହେଲେ ଜାଗା ଦୁର୍ଯ୍ୟୋଧନ ନ ଦିଅନ୍ତି । ପାଣ୍ଡବ-ମାନଙ୍କୁ ଅଗତ୍ୟା ଯୁଝିବାକୁ ପଡ଼ିଲା । ଯୁଦ୍ଧ ଲଗେଇଦେଲେ କୌରବଙ୍କ ମାମୁଁ ଶକୁନି । ତାଙ୍କର କୌରବଙ୍କଠାରେ ଅହନ୍ତା ଥିଲା, ଏବେ ବେଳ ଉଣ୍ଡି ସେ ଦାଉ ସାଧିଦେଲେ । କୌରବଙ୍କର ଖାଇ ତାଙ୍କରି ଖରାପ ଚିନ୍ତା କରୁଥିଲେ ଶକୁନି । ଶକୁନିଙ୍କ ବହୁତ ଦିନର ଭିତରିମାରୁ ମନ୍ତରର ଫଳ ଫଳିଲା ।

ଶକୁନି ସାର ଶକଟା ଖେଳ ଭିଆଇଦେଲେ । ସେଇ ଶକଟା କାଠି ଦିଇଟାକୁ ଶକୁନି ତିଆରି କରିଥିଲେ ତାଙ୍କ ବାପାଙ୍କ ପଞ୍ଜରା ହାଡ଼ରେ । ଦୁର୍ଯ୍ୟୋଧନ ହେଟିକା ମାରିଥିଲେ ଶକୁନିଙ୍କ ବାପକୁ । ବାପଙ୍କ ହାଡ଼ରେ ଶକୁନି ଏତେ ଦିନକେ ବଇରତା ସାଧିଲେ ।

[ ୨ ]

ଯମୁନା ନଈ କୂଳରେ ମଥୁରା । ମଥୁରାରୁ ନଈ ତଟେ ତଟେ ଉତ୍ତର ଆଡ଼କୁ ଗଲେ ପନ୍ଦର କୋଶ ଦୂରରେ ହସ୍ତିନା ।

ଦ୍ୱାରକା ମଧ୍ୟ ନିକଟରେ । ହସ୍ତିନାର ଆଉ ଗୋଟେ ନା’ ଇନ୍ଦ୍ରପ୍ରସ୍ଥ । ଆଜକାଲି ତା’ ନାଆଁ ଦିଲ୍ଲୀ । ଦିଲ୍ଲୀ ହେଉଛି ଦେଶୀ ନାଆଁ, ଡାକ ନାଆଁ । ତାର ସଂସ୍କୃତ ନାଆଁ ଦେହଳୀ । ଦେହଳୀ ବୋଇଲେ ଦୁଆରବନ୍ଧ । ଆମର ଜନମଭୂଇଁ ଭାରତ ବର୍ଷର ଦିଲ୍ଲୀ ହେଉଛି ଦୁଆରବନ୍ଧ । ହିମାଳୟ ପରବତର ଖାଇବର ଘାଟୀ ବାଟେ, ନଇଲେ ବୋଲନ୍ ଘାଟୀ ପାରି ହେଇ ବାହାରି ଶତ୍ରୁ ଭାରତବର୍ଷ ଭିତରକୁ ଆସିଲେ ଦିଲ୍ଲୀ ବାଟେ ଆସନ୍ତି—ଦିଲ୍ଲୀ ଭେଦିଲା ପରେ ଦେଶ ଭିତରେ ପଶନ୍ତି । ହୁନ, ଯବନ, ପଠାଣ, ମୋଗଲ ସବୁ ବିଦେଶୀ ଶତ୍ରୁ ଦିଲ୍ଲୀ ବାଟେ ଆସି ପୂର୍ବକାଳରେ ଦିଲ୍ଲୀରେ ରାଜଧାନୀ ବସେଇଥିଲେ—ଦିଲ୍ଲୀରେ ପଶିଲେ ଗଡ଼ ବାନ୍ଧିଥିଲେ । ଦିଲ୍ଲୀରେ ସାତଟା ବଡ଼ ବଡ଼ ରାଇଜ ଉଇଁଛି, ବୁଡ଼ିଛି—ସାତଟା ଗଡ଼ ଉଠିଛି, ପଡ଼ିଛି ।

ଏବେ ଭାରତର ରାଜଧାନୀ ମଧ୍ୟ ଦିଲ୍ଲୀ । ଭାରତର ବଡ଼ଲାଟ ବାସ କରନ୍ତି ଦିଲ୍ଲୀରେ ।

ସେଇ ମହାଭାରତ ଯୁଗରେ ଦିଲ୍ଲୀର ନାଆଁ ଥିଲା ହସ୍ତିନା ବା ଇନ୍ଦ୍ରପ୍ରସ୍ଥ । ଶକଟା ଖେଳରେ କୌରବେ ଜିଣି ପାଣ୍ଡବଙ୍କୁ ବଣକୁ ଚଡ଼େଇ ଇନ୍ଦ୍ରପ୍ରସ୍ଥ ଗୋଟାକଯାକ ଏକହାତିଆ ମାଡ଼ିବସିଲେ । ମାଡ଼ିବସିଲେ ସିନା ଆପଣା ହାତରେ ଜଉ ଛେଚିଦେଲେ । ତାଙ୍କ ନାଶର ବାଟ ଫିଟିଗଲା ।

[ ୩ ]

ଇନ୍ଦ୍ରପ୍ରସ୍ଥଠାରୁ ଅଳପ ଦୂରରେ କୁରୁକ୍ଷେତ୍ର ଯୁଦ୍ଧଭୂଇଁ । କୁରୁକ୍ଷେତ୍ର ଗୋଟେ ବଡ଼ ବାଲିସିଆ ଭୂଇଁ—ଆଖି ପାଇବ ନାହିଁ ଏଡ଼େ ବଡ଼ । କୌରବେ, ପାଣ୍ଡବେ ନିଜ ନିଜ ସଇନ୍ୟ ନେଇ

ସେଇଠି ଠିଆ । ଦୁଇପକ୍ଷର ରଜା ମହାରଜା ଦୁଇପଟର ରଥୀ ମହାରଥୀ ସବୁ ଠୁଳ ହେଇଚନ୍ତି । ଆମ କଳଙ୍ଗ ଦେଶର ରଜା କୌରବଙ୍କ ପଟରେ ରହି ଯୁଝିବାକୁ ହାଜର । ଯୁଦ୍ଧଶିଂଘା ବାଜିଗଲା । ଗଦା ଧେନ ଭୀମ ଆଉ ଦୁଃଶାସନ ଯୁଦ୍ଧକୁ ଡେଇଁ ପଡ଼ିଲେ । ଗଦାରେ ଗଦା ବାଜି ଭାଙ୍ଗିଗଲା । ଦୁହେଁ ଧଗ୍‌ଧଗ୍ ଗଡ଼ାଗଡ଼ିରେ ଲଗିଗଲେ । ଭୂଇଁ ଥରହର କଂପିଲା ।

ସଙ୍ଗେ ସଙ୍ଗେ ଯୁଦ୍ଧ କାହାଳୀ ବାଜି ଉଠିଲା । କାହାଳୀ ଯେତେବେଳେ ଯୁଦ୍ଧ ଡାକ ଦେଲା ସେତେବେଳେ ଖଣ୍ଡା, ବରଚ୍ଛା, ଶର ଶବଦରେ ଗଗନ ପୂରିଗଲା । ଯୁଦ୍ଧ ବାଇଦ କୋଶେ, ଢୁଣ୍ଡି ବାଇଦ ସହସ୍ରେ କୋଶ । କୁରୁକ୍ଷେତ୍ରଯୁଦ୍ଧ ହେଉଚି ଶୁଣି ହଜାର ହଜାର କୋଶରୁ ଦେଖଣାହାରୀଏ ଧାଇଁ ଅସିଛନ୍ତି । ଏ ଯୁଦ୍ଧ ଧରମ ଯୁଦ୍ଧ । ଦେଖିବା ଲୋକଙ୍କର ବିପଦ ନାଇଁ । ହଣିବା ଭଳି ଦୁର ଜାଗାରେ ଠିଆ ହେଇ ଲୋକେ ଯୁଦ୍ଧ ଦେଖିଲେ । ବୀରମାନଙ୍କ ଖଣ୍ଡା ସଙ୍ଗେ ଖଣ୍ଡା, ବରଚ୍ଛା ସଙ୍ଗେ ବରଚ୍ଛା, ଗଦା ସଙ୍ଗେ ଗଦା, କାଣ୍ଡ ସଙ୍ଗେ କାଣ୍ଡର ଯୁଦ୍ଧ ଚାଲିଲା । ଜଣକ ହାତରୁ ହତିଆର ଖସିଗଲେ ଆଉ ଜଣକ ହତିଆର ଫିଙ୍ଗିଦେଇ ବଳ କଷାକଷି ପାଇଁ ଡେଇଁପଡ଼ିଲେ । ଭୂଇଁରେ ଯାହାର ପିଠି ଲଗିଗଲା ସେ ହାରିଲା । ଯେ ବଇରୀ ବୁକୁରେ ବସିଲା ସେ ଜିଣିଲା । କେତେ ମଲେ, କେତେ ଦରମରା ହେଲେ ଇମିତି ଦିନ ପରେ ଦିନ ଅଠର ଦିନ ଯୁଦ୍ଧ ଚାଲିଲା ।

[ ୪ ]

ଖଣ୍ଡ ଦୁରରେ ଅର୍ଜୁନଙ୍କ ରଥ । ଅର୍ଜୁନଙ୍କ ରଥରେ ଶ୍ରୀକୃଷ୍ଣ ସାରଥି । କି ଆପଣା କି ପର ସମସ୍ତେ ଅର୍ଜୁନଙ୍କ ରଥ

ଆଉକୁ ଗୁହିଁଚନ୍ତି—ଦେଖଣାହାରଙ୍କ ପତା ପଡ଼ୁନାହିଁ । ଲୋକେ ଆଚମ୍ବିତ ହୋଇ ମୁହଁକୁମୁହଁ ଅନାଅନି ଘେନାଘେନ ହୋଇ କୁହାକୁହି ହେଉଚନ୍ତି—

"କୁରୁକ୍ଷେତ୍ର ମହାଯୁଦ୍ଧେ ଅର୍ଜୁନ ଆଜ ରଥୀ
ଅର୍ଜୁନ ରଥରେ ନିଜେ ଶ୍ରୀକୃଷ୍ଣ ସାରଥୀ !"

ଯୁଦ୍ଧ ଲାଗେ ଲାଗେ ଅଠର ଦିନ ଯାଏଁ ଗୁଲିଲା । ଏ ଅଠର ଦିନିଆ ଯୁଦ୍ଧକୁ ଧରି କବି ବେଦବ୍ୟାସ ଅଠର ପରବ ମହାଭାରତ ଲେଖିଗଲେ । ଆଉ ଆଉ ବିଷୟରେ ଆଉରି ବହୁତ କଥା ଲେଖିଗଲେ । ସେ ଯୁଦ୍ଧ ଗ୍ଲୁଲିଲା । ଶ୍ରୀକୃଷ୍ଣ ରଥ ବାହୁଚନ୍ତି । କାହିଁକି କେଜାଣି ଅର୍ଜୁନଙ୍କ ହାତରୁ ଧନୁବାଣ ଖସିପଡ଼ିଲା— ସେ କାନ୍ଦ କାନ୍ଦ ହୋଇଗଲେ ।

ଶ୍ରୀକୃଷ୍ଣ ପଛକୁ ଓଲଟି ଦେଖିଲେ ଅର୍ଜୁନଙ୍କ ଆଖି ଛଳଛଳ, ତାଙ୍କ ଓଠ କଂପୁଚି । ଶ୍ରୀକୃଷ୍ଣ କାରଣ ପଗ୍ଚରନ୍ତେ ଅର୍ଜୁନ କହିଲେ—"ମୁଁ କାହା ସଙ୍ଗେ ଯୁଦ୍ଧ କରିବି ? କଅଣ ପାଇଁ ଯୁଝିବି ? ଏ ଯୁଦ୍ଧରେ ମୋର କି ଲାଭ ? ଭାଇ, ବନ୍ଧୁ, ଆଉ ଆପଣା ଲୋକଙ୍କୁ ମାରି ମୁଁ କି ଧନ ପାଇବି ? ଗ୍ଲରି ମାଟିର ଭୂଇଁ ଖଣ୍ଡିକ ପାଇଁ ନିଜ ଗୋତ, ନିଜ ରକତର ଭାଇ ବନ୍ଧୁଙ୍କୁ ମାରିବି ! ନା' ମୁଁ ମାରିବି ନାହିଁ, ମାରି ପାରିବି ନାହିଁ । ଯୁଦ୍ଧ ଭୂଇଁରୁ ମୁଁ ଫେରୁଚି—ହେ ଚକ୍ରପାଣି । ମୁଁ ଏ କୁରୁକ୍ଷେତ୍ରରୁ ଫେରୁଚି—ମତେ କ୍ଷମା କର, ବିଦାୟ ଦିଅ—ମୁଁ ଯାଉଚି ।"

[ ୬ ]

ଶ୍ରୀକୃଷ୍ଣ ଥରେ ସୁଦର୍ଶନ ଚକ୍ରକୁ ଧରି ଅର୍ଜୁନଙ୍କ ମୁହଁକୁ ତଳେଇକରି ଅନେଇଲେ—କିଛିକ୍ଷଣ ଅନେଇ କହିଲେ—

"ଅର୍ଜୁନ ! ତୁମେ କଏ, ଏଠାକୁ ଆସିଚ କାହିଁକି ? ଏ ସବୁ କଥା ଭୁଲିଗଲ ? ତମେ ପରା କ୍ଷତ୍ରିୟ ! କ୍ଷତ୍ରିୟର କାର୍ଯ୍ୟ କଅଣ ଜାଣିଚ ତ ? ସବୁ ଜାଣି ଶୁଣି ଏତିକିବେଳେ ଅକିଯାଉଛ ! ବୁଝିଚ ନା କୌରବ ଯିଏ ପାପର ମୂରତି ସିଏ । ପାପକୁ ମାରି ମାଟିରେ ମିଶେଇବା, ପାପର ନାଆଁ ନଭେଇ ଦବା କ୍ଷତ୍ରିୟର ଧରମ । ତୁମ ଧରମ ତୁମେ ପାଳ । ତମ ପରି କ୍ଷତ୍ରିୟ, ଧରମ କଅଣ କରମ କଅଣ ତୁମେ ଜଗତକୁ ଶିଖେଇ ଯାଅ । ଏ ତଂଟିଆଳ ବେଳକୁ ଭାଇ ବନ୍ଧୁ ! କିଏ କାହାର ଭାଇ, କିଏ କାହାର ବନ୍ଧୁ ? ନିଜର ଧର୍ମ ଆଗରେ, ନିଜର କାର୍ଯ୍ୟ-କରଣୀ ଆଗରେ କିଏ ଭାଇ, କିଏ ବନ୍ଧୁ ? ଯିଏ ଡରୁଆ, ଯିଏ ଛେରୁଆ ତାର ତୁଣ୍ଡରେ ଏ କଥା ଶୋଭା ପାଏ । ତୁମେ ବୀର ତୁମେ କ୍ଷତ୍ରିୟ । ତୁମେ ଆପଣା ଧର୍ମ ସାଧିଚ, ଆପଣା କାମ କଅଣ ବୁଝିଚ । ତମେ ଯଦି ହଟିଯିବ, ଏ ଯୁଦ୍ଧପଡ଼ିଆରୁ ଲେଉଟି ଯିବ, ଏ ମରଣ ଭୂଇଁରୁ ଅପସରି ଯିବ, ବୁଝିଥାଅ, ଲୋକେ କହିବେ ଅର୍ଜୁନଟା ଡରୁଆଟାଏ, ଜଗତ କହିବ ଅର୍ଜୁନଟା ମରଦ ନୁହେଁ ମାଇକିନା । ଛି ! ଅର୍ଜୁନ, କ୍ଷତ୍ରିୟ ହୋଇ ଏ ଲାଞ୍ଛନା ଅର୍ଜିବ । ଅର୍ଜୁନ ! ତୁମ ହାତରେ ଧନୁଶର, ତୁମେ ବୀର, ତୁମେ କ୍ଷତ୍ରିୟ । ଉଠ ଅଣ୍ଟା, ଘୁଞ୍ଚ ସେ ମାଇଚିଆ ସଭାବ— ଦେଖାଇବ ତ ଦେଖାଅ ତୁମ ପୁରୁଷପଣିଆ ଏବେ । ବିରାଟ ରଜା ଘରେ ନାଚୁଣି ହେଇଥିଲ ବୋଲି ଏଇଠି ନାଚୁଆ ସାଜିଲେ ଚଳିବ କି ?

ନିଜ ହୃଦରେ ଥରେ ହାତ ବୁଲେଇ ନିଜକୁ ଥରେ ପଚାରି ଦେଖ । ତୁମେ ପୁରୁଷ ପୁଅ । ଆଜି ଡର ନାହିଁ, ସିଂହ ପିଲା ପରି ଡେଇଁପଡ଼— ଦିନେ ଜନମ, ଦିନେ ତ ମରଣ, ଆପଣା ପର

ଭେଦ ଭୁଲି ଡେଇଁ ପଡ଼ ଏ କୁରୁକ୍ଷେତ୍ରକୁ—ଏଠି ଜିଣିଲେ ହସ୍ତିନାର ରଜା ହେବ, ମଲେ ସରଗରେ ବସିବ ।

ବଇଦ ଯିମିତି ନିଜ ଭାଇର ବଥକୁ କାଟିଦିଏ ଭାଇର ମଙ୍ଗଳ ପାଇଁ, ତୁମେ ଯିମିତି ଜଗତର ହିତ ପାଇଁ ଭାଇ ବନ୍ଧୁ ବୋଲି ଭାବନା କର ନାହିଁ—ଆଖି ବୁଜି ହତିଆର ଧର । ଭାଇକୁ ବାଧିବ ବୋଲି ବଇଦ କଣ ଭାଇର ବଥଟା ନ କାଟି ରଖେ ? ଆଗେ ବାଧିବ, ପଛେ ତ ହିତ ହେବ ! ପଛେ ଯେ ଜଗତର ମଙ୍ଗଳ ହେବ, ପଛେ ଯେ ପାପ ତାପ ରୋଗ ଗଉଳି ଏ କୁରୁକ୍ଷେତ୍ରର ରକତ ନଈରେ ଧୋଇଧାଇ ହୋଇଯିବ ତାହା ଭାବି ରଖ । ଭାବି ଚିନ୍ତି ଧର ତୁମର ଧନୁଶର ।”

[ ୬ ]

ଏହା କହି ଶ୍ରୀକୃଷ୍ଣ ଅର୍ଜୁନଙ୍କ ଦେହରେ ହାତ ଦେଇ ତାଙ୍କୁ ଥରେ ହଲାଇଦେଲେ । ସେ ହାତ ବାଜିଲାରୁ ଅର୍ଜୁନଙ୍କ ଦେହରେ ବିଜୁଳି ସଞ୍ଚରି ଗଲା— ତାଙ୍କର ଚେତା ପଶିଲା । ସେ ତହୁଁ ହୁଁକାର ଦେଇ ଉଠିପଡ଼ି କହିଲେ—

“ଡର କାହାକୁ ଭୟ କାହାକୁ
ସାହା କରିଛୁ ମୁଁ ଚଉବାହାକୁ”

କୃଷ୍ଣ ! ତୁମେ ମୋର ଗୁରୁ, ତୁମେ ମୋର ଠାକୁର, ତୁମେ ମୋର ସାରଥି, ତୁମେ ଯେ 'ଆଡେ ନେବ ମୁଁ ସେଇଆଡ଼େ ଯିବି । ‘ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଝିଙ୍କିଲେ ତେଣିକି ଯାଇ ।’ ତେବେ ପ୍ରଭୁ ମୋ ରଥ ଚଳାଅ । ଭୟ ନାହିଁ ମୋର, ଚକ୍ରପାଣି । ତୁମେ ମୋର ସାରଥି ।”

ଅର୍ଜୁନଙ୍କ ରଥ ଚଳିଲା । ଯେ ଦେଖିଲା, ସେ ଧନ୍ୟ ଧନ୍ୟ କଲା । ଶ୍ରୀକୃଷ୍ଣ ରଥ ବାହି ଅର୍ଜୁନଙ୍କୁ ନେଇ କର୍ଣ୍ଣ ରଜା ପାଖରେ ପହଞ୍ଚାଇଦେଲେ । ଅର୍ଜୁନ ତାଙ୍କ ବାଣ ବନ୍ଧିଲେ । ଶ୍ରୀକୃଷ୍ଣ ମଧ୍ୟ ଡେଉଁରି ହାତରେ ବାଣର ଧର ଖାଇବା ହାତରେ ତାଙ୍କ ସୁଦର୍ଶନ ଚକ୍ର ପେଷିଲେ । ଏଇ ମାଡ଼କେ କର୍ଣ୍ଣ ତଳେ ଶୋଇ ପଡ଼ିଲେ । ଦୁର୍ଯ୍ୟୋଧନ, ଦୁଃଶାସନ ଆଉ କୌରବମାନେ ମଧ୍ୟ ଯୁଦ୍ଧରେ ପଡ଼ି ମଲେ । "ଜୟ ଜୟ ଅର୍ଜୁନଙ୍କର ଜୟ" ଏ ଧ୍ୱନିରେ କୁରୁକ୍ଷେତ୍ର କଂପିଗଲା ।

କୌରବ ବଂଶ ଲୋପ ପାଇଲା—ପାଣ୍ଡବଙ୍କର ଜୟହେଲା । ପାପର କ୍ଷୟ ହେଲା, ଧରମର ଜୟ ହେଲା । କ୍ଷତ୍ରିୟର କାର୍ଯ୍ୟ କ୍ଷତ୍ରିୟ କଲା । ମହାଭାରତରୁ ସାର ବାଛି ବ୍ରାହ୍ମଣେ ବସି ଭଗବତ୍‌ଗୀତା ଲେଖିଲେ । ଯୁଗେ ଯୁଗେ ଗୀତା ପ୍ରଚାର କଲା "ନିଜ କାମ ନିଜେ କର—ନିଜର କର୍ତ୍ତବ୍ୟ କାର୍ଯ୍ୟ କରିବାକୁ ପଛଘୁଞ୍ଚା ଦିଅନାହିଁ—ଫଳ ଯାହା ଫଳୁଚି ଫଳୁ, ଫଳକୁ ଆଶା ନ କରି ଆଗେ ଆପଣା କାମ କରିଯାଅ, "ଈଶ୍ୱରଙ୍କଠାରେ ଫଳ ସମରପି ସବୁ କାମ କରି ଚାଲିଯାଅ ।"

[ ୭ ]

କୌରବେ ମଲେ । ପାପ ଅସ୍ତ ହେଲା । ଇନ୍ଦ୍ରପ୍ରସ୍ଥରୁ କୌରବ ନାମ ନିଭିଗଲା । ହସ୍ତିନାରେ କୌରବଙ୍କ ନାଆଁ ଗାଁଆ ଚିହ୍ନ ବର୍ଣ୍ଣ କିଛି ରହିଲା ନାହିଁ । କିନ୍ତୁ ରହିଚି ଧର୍ମ ଦେବତା ଯୁଧିଷ୍ଠିରଙ୍କ ନାଆଁ ।

ଦିଲ୍ଲୀଠାରେ ପୃଥିବୀରାଜ ଖମ୍ଭ (କୁତବ୍‌ମିନାର) ନିକଟରେ ଏ ଧରମ ଦେବତା ମୂରତି ବିରାଜୂଚନ୍ତି—ପଣ୍ଡା ପଡ଼ିଆରିଙ୍କ ଦ୍ୱାରା ପୂଜା ପାଉଚନ୍ତି । ଆଉରି କୁନ୍ତୀ, ଦ୍ରୌପଦୀଙ୍କ ପ୍ରତିମା ଇନ୍ଦ୍ରପ୍ରସ୍ଥରେ ପୂଜା ପାଉଚନ୍ତି । ମୋଗଲ ସମ୍ରାଟ ହୁମାୟୁନ୍ ଯୋ' କୋଠା ଉପରୁ ପଡ଼ି ପ୍ରାଣ ହରାଇଥିଲେ ସେଇ କୋଠା ନିକଟରେ କୁନ୍ତୀ ଦ୍ରୌପଦୀଙ୍କ ମନ୍ଦିର ଅଛି ।

ପାଣ୍ଡବମାନେ ଗଲେଣି, କିନ୍ତୁ ସେମାନଙ୍କ ବଂଶର ଲୋକେ ଆଉରି ରହିଚନ୍ତି ପୁରୁଣା ଦିଲ୍ଲୀର 'ନୀଲକଣ୍ଠେଶ୍ୱର'ରେ । ନୀଲକଣ୍ଠେଶ୍ୱର ସ୍ତ୍ରୀ ପୁରୁଷଙ୍କୁ ଦେଖିଲେ ମନେ ହୁଏ ସତେ ଯିମିତି ସରଗ ଭୁବନର ଦେବ ଦେବୀ ସେଠି ଜୁଣ୍ଡ ହେଇଚନ୍ତି—ସତେ ଯିମିତି କି ନୀଲକଣ୍ଠେଶ୍ୱରଟା ଗୋଟେ ଅପସରପୁରୀ ।

ପାଣ୍ଡବଙ୍କ ଗଡ ଇନ୍ଦ୍ରପ୍ରସ୍ଥ ଉପରେ ଏବର ନୂଆ ଦିଲ୍ଲୀ ତିଆରି ହେଇଚି । ପାଣ୍ଡବଙ୍କ ଗଡର ଅନେକ କାନ୍ଥ ବାଡ ଭଙ୍ଗା-ରୁଜା ହେଇ ପଡ଼ିଚି । ସେଠି ଠିଆ ହେଇ ଦେଖିଲେ ହୃଦରୁ କୋହ ଉଠୁଚି—ମନ ମରିଯାଉଚି, ଲୁହରେ ଆଖିପତା ତିନ୍ତି ଯାଉଚି । ଆହା, ଇନ୍ଦ୍ରପ୍ରସ୍ଥ କି ଥିଲା, କି ହେଲା !

ତେବେବେଳେ ମାଖଯୁଗୀ ଶିଲ ପାହାଡ, ଭଙ୍ଗାଗଡ଼ ଭିତରୁ ପବନ ସୁଅରେ ଯିମିତି କି କାହାର କଥା ଭାସି ଆସୁଚି "ଫଳ ଯାହା ଫଳୁଚି ଫଳୁ—ଫଳରେ ଆଶା ନ ରଖି ନିଜ କାମ କରିଯାଅ ।"

ଏ କଥାଟା ଯିମିତି କି ଯମୁନା ନଈର କଳ କଳ ଶବଦରେ ଉଛୁଳି ଉଠୁଚି । କାନେଇ ଶୁଣିଲେ ଶୁଭିବ ଯମୁନାରୁ

ସେହି କଥାଟା ପବନ ସୁଅରେ ଭାସି ବୈତରଣୀ, ମହାନଦୀ, ଋଷିକୁଲ୍ୟା, ବଂଶଧାରାର କୁଳୁ କୁଳୁ ନାଦରେ ମିଶି ଯାଉଛି—
"ଫଳରେ ଆଶା ନ ରଖି ନିଜ କାମ ନିଜେ କର ।"

---

# ବାପଙ୍କ ଓଳି

[ ୧ ]

ଅଗନାଅଗିନ ବନସ୍ତ । ପତ୍ରଟିଏ ପଡ଼ିଲେ କୁଆଡ଼େ ପଡ଼ିଲାପରି ଶୁଭୁଛି, ଡାଳଟିଏ ହଲିଲେ ଡ଼ିକିଟେ ପଡ଼ିଲାପରି ଶୁଭୁଛି । ସୀତା ଠାକୁରାଣୀ ଗାଲରେ ହାତ ଦେଇ ଚିନ୍ତାରେ ବସିଛନ୍ତି—କୋହ କଇଁଥିନାରେ ତାଙ୍କ ଛାତି ଫାଟି ଯାଉଛି—ଲୁହ ବାରି ହେଉ ନାହିଁ—ତା ମନକୁ ସିଏ ଗଡ଼ି ଯାଉଛି । ଛାତିକ କରତ ଗୁଣ୍ଡିଆକୁ ଚିରଦେଇ କ ଯିମିତିକି ତାଙ୍କ ଅକ୍ଷି କୋଣ ବାଟେ ଧାର ଧାର ଲୁହ ଝରିଯାଉଛି ଦେଉଛି । ଦୁଃଖ ଧରିବାକୁ ତାଙ୍କ ହୃଦରେ ଥାନ ନାହିଁ ।

ସୀତାଙ୍କର ମାସ ଗଡ଼ୁଛି । ଏବେ ପୂରାମାସ । ଇମିତି ଅସମୟରେ ଅଯୋଧ୍ୟା ରାଜନ ରାମଚନ୍ଦ୍ର ସୀତାଙ୍କୁ ତେଜ୍ୟା କଲେ—ଏଡ଼େ ଗୁଣର ଦିଅର ଲକ୍ଷଣ ତାଙ୍କୁ ନେଇ ନିର୍ଜନ ଅପନ୍ତରା ବନସ୍ତ ଭିତରେ ଛାଡ଼ି ଆଇଲେ ।

ଖରା ବର୍ଷା ପଡ଼ିଲେ ବାଟୋଇ ଯିମିତି ଗଛ ଛାଇରେ ହାଲିଆ ମାରନ୍ତି ସିମିତି ହାଲିଆ ମାରୁ ମାରୁ ସୀତା ଠାକୁରାଣୀ ମଝି ବନସ୍ତରେ ସୀତାଙ୍କୁ ସେନ ଲକ୍ଷଣ ଘୋର ନିଦ ଘଲେ—ନିଦ ଯିବାର ଦେଖି ନିଠୁର ଲକ୍ଷଣ ସେଇ ଅପନ୍ତରାରେ ଏକୁଟିଆ ସୀତାଙ୍କୁ ଛାଡ଼ି ରଥ ବାହିଁ ଫେରିଗଲେ ।

ସୀତାଙ୍କ ନବ ରାମଙ୍କ ଭାଇଙ୍କରୁ ଆଖି ମେଲି ନଶୁଣିଆ ଦେଖି ସେ ଚମକି ପଡ଼ିଲେ—ବଡ଼ ଗୁଣିଆ ହୋଇଗଲେ, "ହା, ଲକ୍ଷଣ ! କାହିଁ ଛାଡ଼ି ଦେଇ ଚାଲିଗଲ" ବୋଲି କେତେ କୋଡ଼ି କରୁଣ ହୋଇ କାନ୍ଦିଲେ ।

ତାଙ୍କ ବିକଳ କାନ୍ଦୁଣି ଋଷି ପିଲାମାନଙ୍କ କାନରେ ପଡ଼ିଲା । ଅଳପ ଦୂରରେ ବାଲମିକୀ ଋଷିଙ୍କ ତପୋବନ । ଋଷି ଆଶ୍ରମର ପିଲେ କନ୍ଦମୂଳ ଖୋଳିବା ପାଇଁ, କାଠ ଗୋଟେଇବା ପାଇଁ ନଈ କୂଳେ କୂଳେ ବଣ ଭିତରେ ବୁଲୁଥିଲେ । ମାଈକିନିଆ ଲୋକର କାନ୍ଦୁଣି ଶୁଣି ଋଷି ପୁଅମାନେ ଶବଦ ବାରିବାରିକା ସୀତା ଠାକୁରାଣୀଙ୍କ ଆଡ଼କୁ ତରବର ହୋଇ ଧାଇଁଲେ ।

[ ୬ ]

ସୀତା କମିତି ଋଷି ଆଶ୍ରମରେ କେତେ ଦିନ କଟେଇବାର ଇଚ୍ଛା ପରକାଶ କରନ୍ତେ ରାମଚନ୍ଦ୍ର ତାଙ୍କୁ ଲକ୍ଷଣଙ୍କ ସାଙ୍ଗରେ ବଣକୁ ପଠେଇଲେ, ଲକ୍ଷଣ ତାଙ୍କୁ କମିତି ବଣ ଭିତରେ ଏକୁଟିଆ ଛାଡ଼ି ଚାଲିଗଲେ, ସେସବୁ କଥା ସେ ଋଷି ପିଲାଙ୍କ ଆଗେ ସୀତା ମନ ଫିଟେଇ ବଖାଣିଲେ । ଋଷି ପିଲେ ଏହା ଶୁଣି କାଟ୍ଟା ଚାଟକା ହୋଇଗଲେ ।

ବାଲମିକୀ ଋଷିଙ୍କ କାନକୁ ଏ କଥା ଗଲାକ୍ଷଣି ସେ ଋଷି କନ୍ୟାମାନଙ୍କୁ ସାଙ୍ଗରେ ଘେନି ସୀତାଙ୍କୁ ପାଛୋଟି ନେବାକୁ ଆଇଲେ । ଆଶ୍ରମର ଗାଈ ହରିଣ ମଧ ଋଷିଙ୍କ ପଛେ ପଛେ ଗୋଡ଼େଇ ଅଇଲେ । ସଭିଏ ମିଶି ବଡ଼ ଆଦରରେ ସୀତା ଦେବୀଙ୍କୁ ଆଶ୍ରମକୁ ନେଲେ । ଋଷି କନ୍ୟାମାନେ ସୀତାଙ୍କ ସେବାରେ ଲାଗିଗଲେ ।

ସୀତା ଦେଇ ଗର୍ଭଧର ହୋଇଅଛନ୍ତି । ତାଙ୍କୁ ରାମଚନ୍ଦ୍ର କାହିଁକି ବଣକୁ ଛାଡ଼ ଦେଲେ, ତାହା ବୁଝିବାରେ ବାଲ୍ମିକୀ ଋଷିଙ୍କର ଆଉ ବାକି ରହିଲା ନାହିଁ । ରାକ୍ଷସ ରାବଣ ତାଙ୍କୁ ନେଇ ଲଙ୍କାରେ ରଖିଥିଲା । ଏଥିଯୋଗୁ ସୀତାଙ୍କ ଜାତିଗଲା ବୋଲି ପ୍ରଜା ପାଟକ ଭୂଟଘାଟ ହେଲେ । ରାମଙ୍କ କାନରେ ଏ କଥା ପଡ଼ିଲା । ଏଇ ନିନ୍ଦା ନଉଁଛଣାରୁ ମୁକ୍ତ ହେବା ପାଇଁ ରଜା ରାମଚନ୍ଦ୍ର ତାରପର ରାଣୀ ସୀତାଙ୍କୁ ଛୁଅନ୍ଥଳରେ ବଣକୁ ପଠେଇ ଦେଲେ । ବାଲ୍ମିକୀ ଋଷି ଏ ସବୁ ଭିତର କଥା ସହଜରେ ବୁଝିଗଲେ ।

ବାଲ୍ମିକୀ ଜାଣନ୍ତି ସୀତା ପରମ ସତୀ—ସୀତାଙ୍କପରି ସତୀ କୋଟିକେ ଗୋଟିଏ । ବାଲ୍ମିକୀ ତପସ୍ୟା ବଳରେ ଆଉରି ଜାଣିଲେ ଯେ, ସତୀ ସୀତାଙ୍କ ଗର୍ଭରୁ ଉତ୍ତମ ସୁନ୍ଦର ଜାଆଁଳା ପୁଅ ଦିଓଟି ଜନମ ହେବେ । ଗର୍ଭିଣୀ ସୀତାଙ୍କର ଯିମିତି କିଛି ହେଲେ ଅସୁଖ ନ ହୁଏ ବାଲ୍ମିକୀ ସବୁ ସିମିତି ଯୋଗାଡ଼ କରି ଦେଲେ । ଋଷି ଆଶ୍ରମରେ ସୀତାଙ୍କର କିଛି ଅସୁଖ ଅସୁବିଧା ରହିଲା ନାହିଁ ।

[ ୩ ]

ପରକଥା ଶୁଣି ଲୋକ ନିନ୍ଦା ସହି ନ ପାରି ରାମଚନ୍ଦ୍ର ସିନା ସୀତାଙ୍କୁ ତେଜ୍ୟା କଲେ, ହେଲେ ତାଙ୍କ ମନ ମାନୁଚି କେତେବେ ? ନିତି ଷୋଳ ଘଡ଼ି ସୀତାଙ୍କୁ ଝୁରି ଝୁରି ତାଙ୍କ ଦିନ ସରେ ନାହିଁ—ଝୁରି ଝୁରି ରାମଙ୍କ ତନୁ କ୍ଷୀଣ ହୋଇଗଲା । ରାମଙ୍କର ଏ ଭାବ ଦେଖି ପାଖଲଗା ଲୋକେ କୁହା କୁହି ହେଲେ—

"ଆପଣା ହସ୍ତେ କଦ୍ଧ୍ୱା ହେବ
କେ ତାର ଅଛୁ ପ୍ରତିବାଘ ?"

ହନକୁ ହନ ରାମଚନ୍ଦ୍ରଙ୍କ ହୃଦରେ ଦାରୁଣ ବେଦନା ଉପୁଜିଲା । "କି କଲି ! କି ମୁଁ କରିଛିଲି" ବୋଲି ସେ ମନେ ମନେ ନିଜକୁ କେତେ ଧିକାରିଲେ—ସୀତାଙ୍କୁ ବାହୁନି ବାହୁନି କେତେ କାନ୍ଦିଲେ ।

ସୀତା ଏଣେ ଋଷି ଆଶ୍ରମରେ ହନ ରାତି କେବଳ ମନେ ମନେ ଜପିଲେ—

"ରଘୁପତି ରାଘବ ରାଜାରାମ
ଜାନକୀବଲ୍ଲଭ ସୀତାରାମ ।"

ଏଇ ଜପ ସୀତାଙ୍କର ହଣିଗୁଣ ହେଲା—ଏଇ ଜପରେ ସୀତା ଶରମ ମାରି ଆରାମ ଭଜିଲେ । କେତେ କାଳ ନଈ ସୁଅ ପରି ବହି ଗଲାଣି, ଆଜଯାଏଁ ଜଗତର ଲୋକେ ଏଇ ପଦ ଜପି ଭବ ମୁକତି ପାଉଛନ୍ତି, ଜୀବନରେ ଆରାମ ଭଜୁଚନ୍ତି ।

ବାଲମିକୀ ଋଷିଙ୍କ ଆଶ୍ରମରେ ଏହି ଜପଟିଁ ସୀତା ଋଷିକନ୍ୟା-ମାନଙ୍କୁ ଶିଖେଇ ଦେଲେ । ଏଇ ଜପ ସବୁ ଆଶ୍ରମବାସିଏ ଜପିଲେ । ନିଜେ ବାଲମିକୀ ଋଷି ଏଇ ଜପରେ ମଜ୍ଜିଗଲେ—ମଜ୍ଜିଯାଇ 'ରାମାୟଣ' ଲେଖା ଆରମ୍ଭିଲେ ।

[ ୪ ]

ଦେଖି ଦେଖି ଦଶମାସ ଦଶହନ ଉଣ୍ଡିଗଲା । ସୀତା ଠାକୁରାଣୀ ଦୁଖ ପାଇଲେ । ଗୋଟିଏ ଗୃହଜନରେ ଗଢ଼ା ସୁନା କୁଣ୍ଢେଇପରି ହ'ଟି ପୁଅ ସୀତାଙ୍କ ପେଟରୁ ଜନମିଲେ । ହହିଙ୍କ ମୁହଁରେ ସୀତା

ଠାକୁରାଣୀ ଦେଖିଲେ ସେଇ "ରଘୁପତି ରାଘବ ରାଜାରାମ ଜାନକୀବଲ୍ଲଭ ସୀତାରାମ"ଙ୍କ ଅବିକଳ ଶ୍ରୀମୁଖ ଛବି । ସୀତାଙ୍କ ପ୍ରସବ ବେଦନା କାହିଁ ଉଭେଇ ଗଲା । କହିଲେ ନ ସରେ, ସୀତାଙ୍କର ଆଜ ଏତେ ଆନନ୍ଦ । ତାଙ୍କ ମନରେ କେବଳ ଏତିକ ଭାବନା ହେଲା—"ଆହା ! ଆଜ ଅଯୋଧ୍ୟା ନଅରରେ ଏ ହଳଟି କୁମାର ଜନମ ହୋଇଥିଲେ ରଜା ରାମଚନ୍ଦ୍ର କେତେ ଉଚ୍ଛବ କରି ନ ଥାନ୍ତେ !"

ଜାଆଁଳା ପୁଅଙ୍କୁ ଦେଖି ବାଲମିକୀ ବଡ଼ ହରଷରେ ଆଶ୍ରମରେ ଭୋଜ କରେଇଲେ । ଜାଉଁଳା ହଳଟିକୁ ବାଲମିକୀ ଅତି ଶରଧାରେ ନା'ଦେଲେ ଲବ, କୁଶ । ଲବ କୁଶଙ୍କୁ ଘେନ ବାଲମିକୀ-ଆଶ୍ରମଟି ଘର ପରି ଶୋଭା ପାଇଲା ।

ପିଲା ଦୁଇଟିକୁ ଋଷି କନ୍ୟାମାନେ କ୍ଷଣେ ହେଲେ କୋଳରୁ ଓହ୍ଲେଇଲେ ନାହିଁ । ମାଆ ଦୁଧ ଖାଇ, ଗାଈ ଦୁଧ ଖାଇ ଲବ କୁଶ ଖେଳି ବୁଲି ଦୁଇଭାଇ ଜହ୍ନପରି ଦିନକୁ ଦିନ ବଢ଼ିବାକୁ ଲାଗିଲେ ।

[ ୬ ]

ରାମଚନ୍ଦ୍ର ସୀତାଙ୍କ ଦୁଖରେ ମନ ମାରି ଅଯୋଧ୍ୟାରେ ରାଜୁତି କଲେ । ଲକ୍ଷଣଙ୍କ ମନରେ ମଧ୍ୟ ସୁଖ ନାହିଁ । ସୀତାଙ୍କ ବିହୁନେ ଆଜ ରାମଙ୍କୁ ସେ ସୁନା ମୁକୁଟ ମାନୁ ନାହିଁ—ସୀତା ବିନେ ତାଙ୍କୁ ରାଜପଣ ପସନ୍ଦ ହେଉ ନାହିଁ । ନଅର ନଗ୍ରୁଟିଆ ଲାଗୁଛି—ସତେ ଯିମିତି କି ଭୂତ ଗୋଡ଼େଇ ଆସୁଛି । ରାମ ଲକ୍ଷଣ ତ ଉଆସ ମାଡ଼ୁ ନାହାନ୍ତି ।

ଅଶ୍ୱମେଧ ଯଜ୍ଞ ଆରମ୍ଭ ହେବ । ଏଥି ଯାଗରେ ଘୋଡ଼ା ବଳି ଦିଆଯିବ । ରଜା ରାମଚନ୍ଦ୍ର ଏ ଯଜ୍ଞର ଯୋଗାଡ଼ କରୁଛନ୍ତି । ନିଖୁଣ ଘୋଡ଼ା ବଛା ଯାଇଛି । ଘୋଡ଼ାକୁ ପାଣି ଛଡ଼େଇ ଛାଡ଼ ଦିଆଯାଇଛି । ଘୋଡ଼ା ବୁଲି ବୁଲି ଅବନ୍ଧା ଅଜଣା ହୋଇ ଫେରିଲେ ଅଶ୍ୱମେଧ ଯଜ୍ଞ ହେବ । ଧନୁଶର ଧରି ଘୋଡ଼ା ପଛେ ପଛେ ଲାଗିଚନ୍ତି ଲକ୍ଷଣ, ଭରତ, ଶତ୍ରୁଘ୍ନ ।

ଘୋଡ଼ା ଏକା ନିଶ୍ୱାସରେ ଧାଇଁଛି । ତାକୁ ଅଟକେଇବାକୁ ଏ ମହୀରେ ଷାର କିଏ ? ଇମିତି କୋ'ପୁଅ ଅଛି ତାକୁ ବାନ୍ଧି ବାରଣ କରିବ ?

ଯାଇ ଯାଇ ଘୋଡ଼ା ଯେତେବେଳେ ବାଲମିକୀ ତପୋ-ବନରେ ପହଞ୍ଚିଲା ତା ଟାପୁ ଶବଦ ଶୁଣି ଦୁଇଟା ପିଲା ଗଛ ଉହାଡ଼ରୁ ବାହାରି ପଡ଼ିଲେ—ବାହାରି ପଡ଼ି ଘୋଡ଼ାଟାକୁ ଭିଡ଼ି ଧରି ବାନ୍ଧି ପକେଇଲେ । ଯେ ଦେଖିଲା ସେ ତାଟକା ହେଲା । ପିଲା ଦୁଇଟାର ଏତେ ବଳ ! ଲକ୍ଷଣ, ଭରତ, ଶତ୍ରୁଘ୍ନ କେବେ ନ ଘଟିବା କଥା ଘଟିବାର ଦେଖି ବଡ଼ ଅପୁରୁବ ଆଚମ୍ୱିତ ମଣି ପଚରା ପଚରି ହେଲେ—'ଏ ପିଲା ଦୁଇଟା କିଏ ?'

[ ୭ ]

ଲବ, କୁଶଙ୍କୁ କାଣ୍ଡବନ୍ଧା ଆଉ ପୋଥିପଢ଼ା ଶିଖେଇ ବାଲମିକୀ ନିବାଡ଼ ନିରବାଣ କରେଇଚନ୍ତି । ଏକକୁ ଆରେକ ଧୁରନ୍ଧର । ଦୁହିଁଙ୍କି ଦୁହେଁ ରାମଚନ୍ଦ୍ରଙ୍କ ତେଜଓଜ ଯେନି ଜନମ ଲଭିଚନ୍ତି । ବାଲମିକୀ ନିତି "ରାମାୟଣ" ଗୀତ ରଚୁଛନ୍ତି— ଲବ କୁଶ ନିତି ବସି ଆଶ୍ରମରେ ସେ ଗୀତ ଗାଉଚନ୍ତି—ସେ ଗୀତ

ଶୁଣି ସୀତା ମୋହ୍ତ ହୋଇ ଯାଉଚନ୍ତି—ତାଙ୍କ ହୃଦ ମଧ ଦହ୍ତ ହୋଇ ଯାଉଚ । ଲବ କୁଶ ଗାଇଲାବେଳେ ସୀତା ଦେଖି ମନେ ମନେ ହେଜ ହୁଅନ୍ତି—

"ପୂର୍ବେ ଗଳ୍ପ କଥା ମନେ ପଡ଼ଇ
ଆମ୍ଭ ହାଡ଼ରୁ ମାଉଁସ ଝଡ଼ଇ
× × ×
ଆଜ ଲୋଡ଼ିଲେ କାହିଁଛି ସେକଥା
ପିଠି ଘେନଇ କାହୁଁ ପେଟବଥା !"

ନିତ ବାଲମିକୀ ଲବ କୁଶଙ୍କୁ ଲିଖ ବନ୍ଧା ଶିଖଉଚନ୍ତି, ନିତ ଲିଖ ବନ୍ଧ ଲବକୁଶ ଆଶ୍ରମବାସୀଙ୍କୁ ଜାବା କରି ଦେଉଚନ୍ତି । ପିଲା ଦୋଇଟାର ବୁଦ୍ଧି ବଳ ଯେ ଦେଖୁଚ ସେ ଅତି ଆଚମ୍ବିତ ମଣୁଚ ।

ଏତେକବେଳେ ରଜା ରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞ ପାଇଁ ଲୋଡ଼ା ହେବା ଅବନ୍ଧା ଘୋଡ଼ାକୁ ଲବ କୁଶ ବାନ୍ଧ ରଖିଚନ୍ତି—ଲକ୍ଷଣ, ଭରତ, ଶତ୍ରୁଘନ ପରି ବୀରମାନେ ଘୋଡ଼ାକୁ ଛାଡ଼ ବୋଲି ଯେତେ ଡରେଇଲେ ଯେତେ ଧମକେଇଲେ ହେଲେ ନଟେ ହେଲେ ଚଙ୍କୁ ନାହାନ୍ତି—ଏଡ଼େ ଟାଣୁଆ, ଏଡ଼େ ବଳୁଆ, ଏଡ଼େ ନଭୟାଙ୍କୁ ସେ ଯାଉଁଳା ଭାଇ ଦୁହେଁ !

ପିଲା ଦୋଇଟାଠୁଁ ଘୋଡ଼ା ଛଡ଼େଇ ନେବା ତେତେ ସହଜ, ତେତେ ସୁଲଭ ନୁହେ ଜାଣି ଭରତ, ଶତ୍ରୁଘନ ଭେଣ୍ଡିଆ ଗୁମାନରେ କାଣ୍ଡ କୋଦଣ୍ଡ ଧରି ଠିଆ ହେଲେ ପଡ଼ିଲେ । ବଡ଼ ବଡ଼ଆଙ୍କ ହାତରେ ଧନୁଶର ଦେଖି ଲବ କୁଶ ମଧ କାଣ୍ଡ ବାଉଁଶରେ ଶର

ଯୋଖିଲେ । ଲବ କୁଶଙ୍କ ବାଣ ଯାଇ ଭରତ, ଶତ୍ରୁଘ୍ନଙ୍କ ପାଦ ଚୂମ୍ବିଲା—ସେ ବାଣ ମାଡ଼ରେ ଭରତ, ଶତ୍ରୁଘ୍ନ ତଳେ ପଡ଼ିଗଲେ । ତହୁଁ ଲକ୍ଷଣ କାଣ୍ଡ କୋଦଣ୍ଡ ଧରି ଉଭା ହେଲେ । ଲବ କୁଶଙ୍କ ବାଣ ତ ବିଫଳ ଯାଏ ନାହିଁ—ଯାଇ ବାଜିଲା ଲକ୍ଷଣଙ୍କ ପାଦରେ । ଲକ୍ଷଣ ମଧ୍ୟ ପଡ଼ି ମୂରୁଚ୍ଛି ଗଲେ । ଲବ କୁଶଙ୍କ ଶର ଯାଇ ଭରତ, ଶତ୍ରୁଘ୍ନ, ଲକ୍ଷଣଙ୍କ ପାଦ ଛୁଇଁବାରୁ ସେଥିରେ କିଛି ଭିତରି ଭାବ ଥିବାର ସଭିଏ ଅନୁମାନ କଲେ । ଅନୁମାନଟା ଏକା ଠିକ ହେଲା । ପୁତ୍ରଙ୍କ ବାଣ ବାପାଙ୍କ ଗୋଡ଼ରେ ନ ବାଜି ଆଉ କେଉଁ ଅଙ୍ଗରେ ବାଜନ୍ତା ?

[ ୭ ]

ଏ ଖବର ସେଇକ୍ଷଣି ସୀତାଙ୍କ କାନକୁ ଗଲା । ସୀତା ଠାକୁରାଣୀ ବାଲମିକୀ ଋଷିଙ୍କ ସାଙ୍ଗରେ ଯେଉଁ ଘଟଣା ଥାନରେ ଆସି ପହଞ୍ଚି ଦେଖନ୍ତି ତ ଶ୍ରୀରାମଚନ୍ଦ୍ର ମଧ୍ୟ ଭାଇମାନଙ୍କ ବିପଦ ବାରତା ପାଇ ତରବରରେ ଆସି ଧନୁଶର ଧରି ସେଠାରେ ଉଭା ହୋଇଚନ୍ତି । ଲବ କୁଶଙ୍କ ମୁହଁରେ ନିଜ ମୁହଁର ଛବି, ଆଉ ସୀତା ଦେବୀଙ୍କ ମୁହଁର ଛାଞ୍ଚ ଦେଖି ସେତେବେଳକୁ ରାମଙ୍କ ହୃଦ ସିନେହରେ ଦ୍ରବି ଗଲାଣି । ହେଲେ ମଧ୍ୟ ରାମଙ୍କୁ ଟିକିଏ ଧୋକା ଛୁଉଁଥିଲା—ସେ ପରତେ ଯାଉ ନ ଥିଲେ—ଦୋଦୋପାଞ୍ଚା ହେଉଥିଲେ । ବାଲମିକୀଙ୍କ ସାଙ୍ଗରେ ସୀତା ଯେତେବେଳେ ଆସି ପହଞ୍ଚିଗଲେ ସେତେବେଳେ ରାମଙ୍କର ଆଉ ସନ୍ଦେହ ରହିଲା ନାହିଁ—ତାଙ୍କର ସବୁ ଅରମ୍ଭ, ସବୁ ଅପରତେ କାହିଁ ଉଭେଇ ଗଲା ।

ବୁଢ଼ା ବାଲମିକୀ ଲବ କୁଶଙ୍କୁ ଚହ୍ନେଇ ଦେଲେ । ସୀତା ଆଉ ଲବ କୁଶଙ୍କ ସେବାରେ ଲକ୍ଷଣ, ଭରତ, ଶତ୍ରୁଘ୍ନଙ୍କ ଚେତା ଆସିଲା । ରାମଚନ୍ଦ୍ର ଆଖି ଥନ ଥନ କରି ଲବ କୁଶଙ୍କୁ କୋଳକୁ ଟାଣି ନେଲେ । ସୀତାଙ୍କୁ ଦେଖି ସେ ଥୟ ଧରି ପାରିଲେ ନାହିଁ । ଲକ୍ଷଣ ମୁଣ୍ଡ ନୁଆଇଁ ଦେଲେ । ଯାହାହେଉ ସେଠାରେ ସଭିଙ୍କର ଗୋଟେ ବଡ଼ ମିଳନ ହେଲା । ଏଇ ମିଳନରେ ସଭିଙ୍କ ଆଖିରୁ ଲୁହ ବହି ଗଲା ।

ରାମ, ଲକ୍ଷଣ, ଭରତ, ଶତ୍ରୁଘ୍ନ ମନ ଉଲ୍ଲାସରେ ଘୋଡ଼ାଟି ଘେନ ଅଯୋଧ୍ୟା କଟକକୁ ଫେରିଲେ । ଫେରିବା ଆଗରୁ ରାମଚନ୍ଦ୍ର ଗୁଆ ଦେଇ ଗଲେ ଯେ, ଯଜ୍ଞ ବେଳେ ବାଲମିକୀ ଋଷି ସୀତା ଆଉ ଲବ କୁଶଙ୍କୁ ଘେନ ଅଯୋଧ୍ୟାପୁରୀକୁ ଯିବେ ।

ଯୋ'ଦିନ ଯଜ୍ଞ ଆରମ୍ଭ ସେ ଦିନ ବଧିରେ ପୂରୋହିତେ କହିଲେ କି, ସୀତାଙ୍କୁ ପାଖରେ ବସେଇ ଯାଗ ନକଲେ ରାମଚନ୍ଦ୍ରଙ୍କର ସେ ଯାଗରେ ଫଳ ହେବ ନାହିଁ । ଆଗରୁ ତ ରାମ ଗୁଆ ଦେଇ ଆସିଥିଲେ, ବାଲମିକୀ ମଧ୍ୟ ଠିକ୍ ସମୟରେ ସୀତା ଆଉ ଲବ କୁଶଙ୍କୁ ସଙ୍ଗରେ ନେଇ ସେଠାରେ ପହଞ୍ଚିଲେ ।

ଯଜ୍ଞ ଆରମ୍ଭ ହେଲା । ବାହ୍ମଣେ ମନ୍ତ୍ର ପଢ଼ିଲେ—ବେଦ ଉଚାରିଲେ । ବେଦୀ ଉପରେ ରାମଙ୍କ କଡରେ ସୀତା ଠାକୁରାଣୀ ବିଜେ କଲେ । ବାଲମିକୀ ରଚି ଥିବା 'ରମାୟଣ' ଗୀତ ଲବ କୁଶ ବଡ଼ ମଧୁର କଣ୍ଠରେ ଗାଇଲେ । ନହର ଲୋକେ ବାହାର ଲୋକେ ସମସ୍ତେ ଲବ କୁଶଙ୍କ ରାମାୟଣ ଗୋଳନ ଆଉଡ଼େଇବା ଶୁଣି ମୋହି ହୋଇ ଗଲେ—ତାଙ୍କ ଗୀତ ଶୁଣି ସବୁ ଦୁଖ ପାଶୋରି ହେଲେ । ତେବେ ସୁଦ୍ଧା ରାମଙ୍କ ଦୁଖ ଗଲା ନାହିଁ ।

ରାମଚନ୍ଦ୍ର ମଧ୍ୟ ସୀତାଙ୍କ ଝୁରି ଝୁରି କେତେ ଦିନ ପରେ ତନୁ ତେଜ୍ୟା କରି ଦେଲେ । ଲବ କୁଶ ଦୁଇ ଭାଇ ରାଜ୍ୟରେ ବସିଲେ ରଜା ହେଲେ—ଆଉ ଇମିତି ପରଜା ପାଳିଲେ ଯେ, ଲୋକେ କାଳ କାଳକୁ କହିଲେ—ଲବ କୁଶ ବାପଙ୍କ ପିଲା ।

———

# ମୋ ଜାତି ନେଲ

[ ୧ ]

ଯମୁନା ନଈ କୂଳରେ ବୃନ୍ଦାବନ । ସେଠାରେ ଶ୍ରୀକୃଷ୍ଣ, ନନ୍ଦ ଯଶୋଦା କୋଳରେ ବଢ଼ି ରାଜ ଭୋଗ ପାଉଥିଲେ ହେଲେ ଗଉଡ଼ ପିଲାଙ୍କ ସଙ୍ଗେ ମିଶି ଯମୁନା କୂଳରେ ଗାଈ ଚରାଉଥିଲେ । ଗାଈ ଚରେଇବାଟା ଆଗ କାଳରେ ଗୋଟେ ବଡ଼ ବେଉସା ଥିଲା । ବଡ଼ ଘରର ପୁଏ ମଧ୍ୟ ଗାଈ ଜଗୁଥିଲେ । ବଡ଼ କସ, ସାନ କସ, ସବୁ ଘରର ଝିଏ ଗାଈ ଦୁହୁଁ ଥିଲେ । ଗାଈ ଦୁହୁଁ ଥିବାରୁ ଝିଅମାନଙ୍କର ନାଆଁ ଥିଲା ଦୁହିତା—ଅର୍ଥାତ୍ ଯେ ଗାଈ ଦୁହେଁ । ଅତି ପୁରୁଣା ଯୁଗରେ ଆର୍ଯ୍ୟ ଜାତି ମେଣ୍ଢା ପାଳି, ଗାଈ ପୋଷି ଜୀବନ କଟଉ ଥିଲେ । ପଶୁ ପାଳିବାଠାରୁ ବଳି ଧର୍ମ ନ ଥିଲା ।

ସେହି ଯୁଗର ଗୋପାଳ ନାମରେ ଏକ ଆର୍ଯ୍ୟ ଜାତିର ଲୋକଙ୍କ ବଂଶରେ ଶ୍ରୀକୃଷ୍ଣ ଜନମ ହୋଇଥିଲେ । ଗୋପ, ମଥୁରା, ବୃନ୍ଦାବନରେ ଶ୍ରୀକୃଷ୍ଣ ତାଙ୍କ ଲୀଳା ଦେଖାଇ ଯାଇଚନ୍ତି । ଆଜଯାଏଁ ଗୋପ, ମଥୁରା, ବୃନ୍ଦାବନ ହିନ୍ଦୁ ଜାତିର ତୀର୍ଥମାନଙ୍କ ଭିତରେ ବଡ଼ ତୀର୍ଥ ବୋଲି ଗଣା ଯାଉଛି ।

ଗୋପ, ବୃନ୍ଦାବନରେ ଶ୍ରୀକୃଷ୍ଣ ସାଙ୍ଗ ସାଥୀ ଗଉଡ଼ ପିଲାଙ୍କ ସଙ୍ଗରେ ମିଶି ଯମୁନା କୂଳରେ ଗାଈ ଚରେଇ ଚରେଇ, ବଂଶୀ ବଜେଇ ବଜେଇ, ହସ କଉତୁକରେ ଖେଳ ବୁଲି ବାଲ୍ୟକାଳଟା କଟେଇ ଦେଇଥିଲେ । ଶ୍ରୀକୃଷ୍ଣ ଗୁରୁଶାଳୀରେ ପଢ଼ିଲାବେଳେ ତାଙ୍କର ଜଣେ ବଡ଼ ସାଥୀ ଥିଲେ ସୁଦାମ । ସୁଦାମ, ଶ୍ରୀକୃଷ୍ଣ ସଙ୍ଗାତ ବସିଥିଲେ । ସୁଦାମ ଗରିବ ବାହ୍ମଣ ଘରର ପୁଅ । ଶ୍ରୀକୃଷ୍ଣ ରଜାଘର ପୁଅ । ମାତ୍ର ଦୁହିଁଙ୍କ ଭିତରେ ପାଣି ଗଳିବ ନାହିଁ ଭଳିଆ ସିନେହ ଥାଏ । ଏକକୁଆରେକ ଦଣ୍ଡେ ନ ଦେଖିଲେ ବାଇ ହୋଇ ଯାଉଥିଲେ ।

[ ୨ ]

କୃଷ୍ଣ ଯାହା ଖାଉଥିଲେ, ସୁଦାମ ତାହା ଖାଉଥିଲେ । ସୁଦାମ ଶ୍ରୀକୃଷ୍ଣଙ୍କୁ ଭୁଞ୍ଜାଇ ଦେଉଥିଲେ, ଶ୍ରୀକୃଷ୍ଣ ସୁଦାମଙ୍କୁ ଖୁଆଇ ଦେଉଥିଲେ । ଏହା ଦେଖି ଗଉଡ଼ ପିଲେ ଆନନ୍ଦରେ ତାଳି ମାରି ନାଚୁଥିଲେ । ଗଉଡ଼ ପିଲାଙ୍କ ସଙ୍ଗେ ଏକାଠି ପଡ଼ରଡ଼ରେ ଖାଇ କାଳିଆ କହ୍ନୁ ମଧ୍ୟ ମୁରଲୀ ବାହି ବାହି ନାଚୁଥିଲେ ।

କୃଷ୍ଣ ନାଚିଲେ ଯମୁନା ନଈ ଉଛୁଳୁ ଥିଲା, ଯମୁନା ଉଜାଣି ବୋହୁଥିଲା । କୃଷ୍ଣଙ୍କ ବଂଶୀ ନାଦ ଶୁଣିଲେ ଗଉଡ଼ ଘରର ବୋହୂ, ଝିଏ ଯେ ଯୋଉଠି କାମ ଛାଡ଼ି ସେଇ ଆଡ଼କୁ କାନ ଦେଉଥିଲେ । କୃଷ୍ଣ ସଙ୍ଗତେ ମିଶି ସୁଦାମ ଯେତେବେଳେ ନାଚୁଥିଲେ ସେତେବେଳର ଶୋଭା ଧରଣୀ ଧରି ପାରୁ ନଥିଲା ।

ସେ ନାଚ, ସେ ଗୀତ, ସେ ମୁରଲୀ ନାଦରେ କଦମ୍ବ ଗଛର ଶାଖା ମେଲି ଯାଉଥିଲା, କଦମ୍ବ ଫୁଲ ଫୁଟି ଉଠୁଥିଲା,

ଗଛ ଲତା ଦୋହଲି ଯାଉଥିଲା, ମୟୂର ପୁଚ୍ଛ ଟେକି ନାଚୁଥିଲା, ହରିଣ କୁଦାଟୁ ଥିଲା, ଦିନବେଳେ ମଧ୍ୟ ଆକାଶରେ ତାରାଗୁଡ଼ିକ ଫୁଟି ଉଠୁଥିଲେ । ଏତେ ସୁନ୍ଦର ସେ ଶୋଭା ଯେ, ତାକୁ ତୁଣ୍ଡରେ କହି ହେବ ନାହିଁ, କି କଲମରେ ଲେଖି ହେବ ନାହିଁ, କି ତୁଳୀରେ ଆଙ୍କି ହେବ ନାହିଁ । ଶ୍ରୀକୃଷ୍ଣ ଓ ସୁଦାମର ନାଟ ଗୀତ ଇମିତି ଜଗତକୁ ମୋହି ଦେଉଥିଲା । ଆଉ କୃଷ୍ଣ ସୁଦାମ ହାତରେ ଷଣେ ହେଲେ ଛାଡ଼ ବାଉ ନଥିଲା । ମାଆ ଯଶୋଦା ମଧ୍ୟ ଶ୍ରୀକୃଷ୍ଣଙ୍କୁ ଯେତିକି ସୁଦାମକୁ ସେତିକି ପିନନ୍ଦ କରୁଥିଲେ ।

[ ୩ ]

ସବୁଦିନ ସମାନ ଯାଏ ନାହିଁ । ଦୁଷ୍ଟସୁ। ଜହ୍ନ ବଢ଼ି ବଢ଼ି ଆଳୀପଟ ପରି ସୁନ୍ଦେଲି ଜହ୍ନ ହୋଇ ଜଳି ଉଠେ । ଶ୍ରୀକୃଷ୍ଣ ନନ୍ଦ ଯଶୋଦା କୋଳରେ ବଢ଼ି ଖାଇ ପିଇ ଖେଳି ବୁଲି ଗୋପପୁରେ ଷଣ୍ଢ ହେଲେ—କଂସକୁ ବଧି ମଥୁରା କଟକରେ ଅଜା ଉଗ୍ରସେନକୁ ରଜା କରେଇ ମାଈମାନଙ୍କୁ କହିଲେ—

"ମଞ୍ଚାରୁ ପଡ଼ି ମାମୁଁ ମଲ
ମତେ ତ ଦଇବ ରଖିଲା ।"

ତହୁଁ ଶ୍ରୀକୃଷ୍ଣ ଯାଇ ରହିଲେ ଦ୍ୱାରକା କଟକରେ । ସେଦିନଠୁ ଶ୍ରୀକୃଷ୍ଣ ସୁଦାମର ଆଉ ଭେଟ ନାହିଁ । ଦୁଖୀ ସୁଦାମ ଦୁଆରେ ଦୁଆରେ ବୁଲି ଭିକ ମାଗି ପେଟ ପୋଷୁଥାଏ । ସୁଦାମ ଶ୍ରୀକୃଷ୍ଣଙ୍କୁ ଗୁଣି ହେଉଥାନ୍ତି—ମନେ ମନେ ଭାଞ୍ଜୁଥାନ୍ତି— "ମତେ କି ସେବରି କାହ୍ନୁଆ କାହ୍ନୁ ସେଭଳି କାହ୍ନୁ ହୋଇଥିବେ ! ରାଜଗାଦିରେ ବସି ଦ୍ୱାରକା କଟକରେ ରଜା ହୋଇ ସେ କି ମତେ ଆଉ ଚହ୍ନିବେ ? ସେବେ ମୋ ସଙ୍ଗରେ ଏକା ପତରରେ

ନ ଖାଇଲେ, ମଟେ ଖୁଆଇ ନ ଦେଲେ, ମୁଁ ତାଙ୍କୁ ଭୁଞ୍ଜାଇ ନ ଦେଲେ ତାଙ୍କର ଦିନ ସରୁ ନ ଥିଲା—ଏବେ କି ସେ ଦ୍ୱାରକା-ରାଜନ ଏ ଗାନହୀନ ନପଟ ନିର୍ଜନ ଅଭାଗତ ସୁଦାମକୁ ପଚାରିବେ ?"

[ ୪ ]

କୃଷ୍ଣ ନାମ ଜଗତର ଜପମାଳା ହୋଇଛି । କୃଷ୍ଣ ଦ୍ୱାରକାରେ ଗଡ଼ ବାନ୍ଧି, ଜୟ ପତାକା ଉଡ଼ାଇ ଧର୍ମ ବଳରେ ଜଗତକୁ ଜିଣିଚନ୍ତି । ଯେ ତାଙ୍କ ନାମ ଶୁଣୁଛି ସେ ତାଙ୍କୁ ଭଜୁଛି । ଯେ ତାଙ୍କୁ ଭଜୁଛି ସେ ଗତି ମୁକ୍ତି ପାଉଛି ।

ନାନା ଠାଁରୁ ରଜା ମହାରଜା ରଥ ଚଢ଼ି ଦ୍ୱାରକା ଆସୁଚନ୍ତି କେବଳ ଶ୍ରୀକୃଷ୍ଣଙ୍କ ଦର୍ଶନ ପାଇବା ପାଇଁ । ଶ୍ରୀକୃଷ୍ଣଙ୍କ ଉପଦେଶ ଶୁଣିବା ପାଇଁ ଅନେକ ବଡ଼ ଲୋକ ଧାଇଁ ଆସୁଚନ୍ତି । ରଜା ମହାରଜାମାନଙ୍କୁ ମଧ୍ୟ ଶ୍ରୀକୃଷ୍ଣଙ୍କ ଦେଖା ମିଳିବା କାଠିକର ପାଠ । ଅର୍ଜୁନଙ୍କ ପରି ବୀର, ଯୁଧିଷ୍ଠିରଙ୍କ ପରି ଧର୍ମଦେବତା ଶ୍ରୀକୃଷ୍ଣଙ୍କ ଉପଦେଶ ଶୁଣିବାକୁ ଧାଇଁ ଆସିବା ଦିନୁ କି ଦକ୍ଷିଣ କି ଉତ୍ତର ଗୋଟାକଯାକ ଭାରତରୁ ରଜା ପରଜା ଶ୍ରୀକୃଷ୍ଣଙ୍କୁ ଦେବତା ବୋଲି ଭକ୍ତି କଲେଣି, ପୂଜା କଲେଣି । ଗରିବ ସୁଦାମକୁ ଅବା ଶ୍ରୀକୃଷ୍ଣଙ୍କ ଦରଶନ ମିଳିବ କାହିଁ ? ସୁଦାମ ଦିନ ରାତି କୃଷ୍ଣ ନାମ ଶୁଣି ଏହା ଭାବୁଥାଏ ।

[ ୫ ]

ବୁଲି ବୁଲି କୋଠି କଣ୍ଟୁ ପେଟକୁ ଅଣ୍ଟିଲା ଭଳି ନ ପାଇ ଦିନେ ଘରର ଘରଣୀ ବୋଲିବାରୁ ସୁଦାମ ଦ୍ୱାରକା ଚାଲିଲେ—ଯାଇ ମିଳିଲେ ଦ୍ୱାରକା କଟକରେ । ଘରଣୀ ମୁଠେ ଖୁଦ ଭାଜିଲେ,

ସେଇଟକ କନା ଖଣ୍ଡିକରେ ବାନ୍ଧି କାଖରେ ଜାକି ସୁଦାମ ମୁହଁାଟିଆ ହୋଇ ବାହାରିଚନ୍ତି । ଉଦୁଉଦିଆ ଖରା—ବାଲିପିଆ ଭୂଇଁ—ତଳ ପୋଡ଼ ଉପର ପୋଡ଼ । ପାଦ ଫାଟିଲାଣି—ମୁହଁ ବୁଲେଇଲାଣି । ଭୋକରେ ପେଟ ଜଳୁଚ—ଶୋଷରେ ତାଳୁଳ ଫଟାଳ ଲାଗୁଚ । ଗରିବ ବାମ୍ଭଣଟାକୁ ଚିହ୍ନୁଚ କଏ ?

ଦ୍ୱାରକାନାଥ ଶ୍ରୀକୃଷ୍ଣଙ୍କର ସେ କି ପିଲାବେଳର ସାଙ୍ଗ ସେ ଆଜି ପଥର ଭିକାରି । ଦ୍ୱାରକା ପୁରୀରେ ଯେ ଆଜି ରଜା ତାଙ୍କର ହାତୀ ଘର ଦୁଆରରେ ହାତ ପାତି, ବାର ଦୁଆରରେ ହାତ ପସାରି ମୁ୍ଏ ହେଲେ ଭିକ ପାଇବାକୁ ନାହିଁ ।

ଶ୍ରୀକୃଷ୍ଣଙ୍କ ଛାମୁରେ ଜଣେଇବା ପାଇଁ ସୁଦାମ ଦ୍ୱାରୀର ହାତ ଧରି କାକୁସ୍ତ ହୋଇ ବହୁତ କହିଲେ । ସୁଦାମଙ୍କ ଦରିଦ୍ର ବେଶ ଦେଖି ଦ୍ୱାରକା କଟକର ଦ୍ୱାରୀ ନାକ ଟେକିଲା—ତାଙ୍କୁ ନଜରକୁ ଆଣିଲା ନାହିଁ । କେତେ ନେହୁରା ଥୋବଡ଼ ହେଲେ ମଧ୍ୟ ଦ୍ୱାରୀ ତାଙ୍କ କଥାରେ କାନ ଡେରିଲା ନାହିଁ—ତାଙ୍କୁ କଡ଼ାକର ହେଲେ ଖାତିର କଲା ନାହିଁ । ସୁଦାମ ବଡ଼ ହାରମନା ହେଲେ—ମନ ବେଦନା ମନରେ ମାରି ମୁହଁ ଶୁଖେଇ ନିଜକୁ ନିପଟ ନିରଖ ନିରମାଖି ଭବ ଦୁଆରର ଅବଗୁଣ ସହି ନପାରି ବାଟ ଭାଙ୍ଗି ପଳେଇବାକୁ ମନ ବଳେଇଲେ । ହେଲେ କାହିଁକି କେଜାଣି କୃଷ୍ଣଙ୍କ ଦ୍ୱାରରୁ ଖାଲି ହାତରେ ଫେରି ଯିବାକୁ ତାଙ୍କ ମନ ମାନିଲା ନାହିଁ । "କୃଷ୍ଣଙ୍କ ଦ୍ୱାରରୁ ବାହୁଡ଼ି ଯିବ !—କିଛି ନ ନେଇ ଖାଲି ହାତରେ ବାହୁଡ଼ି ଯିବ ! ଏ ଖୁଦଭଜା ମୁଠାକ ଫେରେଇ ନେବ—ଏ ମୁଠାକ କୃଷ୍ଣଙ୍କୁ ନ ଭୁଞ୍ଜେଇ ବାହୁଡେଇ ନେବ !" ସୁଦାମ ମନେ ମନେ ଇମିତି ଭାବନା କରୁଚନ୍ତି,

ଏତିକିବେଳେ ମୁଣ୍ଡ ଟେକି ଦେଖିଲେ ଅଳପ ଦୂରରେ ଦ୍ୱାରକା ନଅରର ଦୋମହଲା କୋଠା ଉପରେ ଶ୍ରୀକୃଷ୍ଣ କଅଣ ଭାବି ଭାବି ଟହଲୁଚନ୍ତି ।

ସମସ୍ତ ଭୁଲି ସୁଦାମ ଡାକ ପକେଇଲେ—"ମହାରାଜା ଦ୍ୱାରକାନାଥଙ୍କର ଏ ଗରିବ ଆଡ଼କୁ ଥରେ କୃପାଦୃଷ୍ଟି ପଡ଼ୁ ! ଭୋକିଲା ବାହ୍ମଣକୁ ମୁଠେ ଭୋଜନ ମିଳୁ । ଭଗବାନଙ୍କର କଣିକେ ପ୍ରସାଦ ମିଳୁ !"

[ ୬ ]

ଶ୍ରୀକୃଷ୍ଣ ତାଙ୍କ ପିଲାବେଳର ବୃନ୍ଦାବନ କଥା ମନେ ମନେ ସୁମରୁଥିଲେ—ପିଲାକାଳର ସାଙ୍ଗସାଥୀଙ୍କୁ ଗୋଟିକୁ ଗୋଟି ମନେ ମନେ ଦେଖୁଥିଲେ—ସେଇ ଖେଳ ଖାଇବା ବୟସର ଭାବ ମନେ ପକେଇ, କୋ' ଅଜଣା ବଳଜରେ ତାଙ୍କୁ ଭସେଇ ଦେଇ ଦୋ ମହଲା ଉପରେ ପହଣ୍ଡ ବଙ୍କେ କରୁଥିଲେ । ଠିକ ସେଇ ଭାବନାବେଳେ ସେଇ ପିଲାକାଳର ଯେ କ ବଡ଼ ସାଥୀ ତାର ସେହି ଚହ୍ଲା ଡାକ ଶୁଣି ଶ୍ରୀକୃଷ୍ଣ ଛନ୍ନ ହେଇ ଗଲେ—ଚମକ ପଡ଼ିଲେ । ସେ ଡାକ ଯିମିତି ତାଙ୍କ କାନରେ ବାଜିଲା ସିମିତି ସେ ଆତୁର ଅସମ୍ଭାଳ ହୋଇ ଦୋମହଲାରୁ ଓହ୍ଲେଇ ଆସି ସିଂହଦ୍ୱାର ଠେଇଁ ପହଞ୍ଚି ଗଲେ ।

ସୁଦାମଙ୍କର ଆଉ ଆପଣାର ପରିଚୟ ଦେବାର ଲୋଡ଼ା ହେଲା ନାହିଁ । "ହଇ ସୁଦାମ" ବୋଲି ଶ୍ରୀକୃଷ୍ଣ ଏକା ଥରକେ ତାଙ୍କୁ କୁଣ୍ଢେଇ ପକେଇଲେ । ଦୁହିଁଙ୍କ ଆଖିରୁ ଝରଝର ଲୁହ ବହିଗଲା ।

ପାଇକ, ସୈନ୍ୟ, ଦୁଆରୀ, ଜଗୁଆଳ ତାଟକା ହୋଇ ଗଲେ – ବଡ଼ ଆଚମ୍ବିତ ମଣିଲେ । ରଜା ମହାରଜାମାନେ ଆସି ଯାହାଙ୍କ ଦେଖା ନ ପାଇ ଫେରୁଚନ୍ତି—ଯାହାଙ୍କ ଦର୍ଶନ ପାଇଁ ଦ୍ଵାଦଶୀ କରି ରହୁଚନ୍ତି, ଆଜ ସେହି ଦ୍ଵାରକାନାଥ ଶ୍ରୀକୃଷ୍ଣ ନିଜେ ଉପରୁ ତଳକୁ ଓହ୍ଲାଇ ଆସି ଗରିବ ବାହ୍ମଣଟାକୁ ହାଇବାହୁଡ଼ରେ ପୋଟାଳି ପକେଇଚନ୍ତି ! ଏ ଦୃଶ୍ୟ ଦ୍ଵାରକାରେ ଦେଖା ନଥିଲା । ଆଜ ଦ୍ଵାରକାବାସିଏ ଏହା ଦେଖି ଆଚମ୍ବିତ ମଣିବା କଥା ।

[ ୭ ]

ଅନେକ ସଙ୍ଗତ କଥା ପଚରା ହେଲା ପରେ ଶ୍ରୀକୃଷ୍ଣ ପଚାରିଲେ, "ହଇ ସୁଦାମ ମୋ ସଙ୍ଗାତୁଣୀଟି ମୋ' ପାଇଁ କଅଣ ଆଣିଚ କହିଲ ?" ସୁଦାମ ଲାଜ ସରମରେ ମୁଣ୍ଡ ପୋତି ଦେଲେ—ଗରିବର ଘରଣୀ ଯାହା ଦେଇଚି ତାହା ସେ କୋ'ଣ୍ଡରେ କହିବେ, ଥିର କରି ପାରିଲେ ନାହିଁ—ତଳକୁ ଉପରକୁ ଅନାଇ ଅନେକ ଭାବିଲେ । କୃଷ୍ଣ ତୁହାଇ ତୁହାଇ ପଚାରନ୍ତେ, ତାଙ୍କର ଗଉଁଧା କାଳବାର ବାଉନେଇ କନା ଗଣ୍ଠିରେ ବନ୍ଧା ଖୁଦଭଜା ମୂଠାକ ସୁଦାମ ଅଧେ ଡ଼ର ଅଧେ ସରମରେ ବାହାର କଲେ—ବାହାର କରି ଶ୍ରୀକୃଷ୍ଣଙ୍କ ଶ୍ରୀହସ୍ତକୁ ତାହା ବଢ଼େଇ ଦେଲେ ।

ସଙ୍ଗାତୁଣୀଙ୍କର ସେଇ ଖୁଦଭଜା ମୁଠିକ ଅମୃତ ସମାନ ମଣି ଶ୍ରୀକୃଷ୍ଣ ତାହା ଅତି ସଗରରେ ଭୋଜନ କଲେ । ସଙ୍ଗାତୁଣୀ ସିଞ୍ଚ ହୃଦୟଟର, ଭକତିଭାବରେ ଯୋ ମୂଠାକ ଅମୃତ ଗେରସ୍ତ ହାତରେ ପଠେଇ ଥିଲେ, ତାହା ଭୁଞ୍ଜି କୃଷ୍ଣଙ୍କ ଆନନ୍ଦ ଉଛୁଳି ଉଠିଲା । ଆନନ୍ଦରେ ସୁଦାମଙ୍କ ଆଖି ମଧ୍ୟ ଛଳ ଛଳ ହୋଇଗଲା ।

ଶ୍ରୀକୃଷ୍ଣଙ୍କ ଆଜ୍ଞା ହେଲା, ସୁଦାମ ଏଣିକି ଆଉ ଭିକାରି ବେଶରେ ଦ୍ୱାର ଦ୍ୱାର ବୁଲିବେ ନାହିଁ । ଠିକ୍ ସୁଦାମଙ୍କର ଯାହା ଲୋଡ଼ା ଶ୍ରୀକୃଷ୍ଣ ତାଙ୍କୁ ତାହା ଦେଇ ପଠାଇ ଦେଲେ । ଶ୍ରୀକୃଷ୍ଣଙ୍କ ଅଙ୍ଗ ସଙ୍ଗ ସିନେହ ସରାଗ ପାଇ ସୁଦାମଙ୍କର ଆଉ ଅଭାବ ରହିଲା ନାହିଁ । ସୁଦାମ ଶ୍ରୀକୃଷ୍ଣଙ୍କୁ ଚିର ଦିନ ଭଜିଲେ । କୃଷ୍ଣଙ୍କଠୁଁ ରଙ୍କଛଡ଼ା ବିପୁଳ-ଘର ଦାନ ପାଇ ସୁଦାମ ପିଲା କୁଟୁମ୍ବ ଘେନି ସୁଖରେ ଘର କଲେ ।

ଦିନେ କଥା ପ୍ରସଙ୍ଗରେ ସୁଦାମ ଶ୍ରୀକୃଷ୍ଣଙ୍କୁ କହିଲେ, "ପ୍ରଭୁ, ମୁଁ ଯେତେବେଳେ ଦରିଦ୍ର ଥିଲି, ସେତେବେଳେ ତୁମକୁ କ୍ଷଣେ ହେଲେ ପାଶୋରି ପାରୁ ନ ଥିଲି । ଏବେ ଏ ମୋ' ସମ୍ପତ୍ତି ହେଲା, ଏହି ମୋହରେ ଆଜି ମୁଁ ତୁମକୁ ଭୁଲିଲି । ମୁଁ ମୋ' ଦରିଦ୍ର ଜୀବନର ଲୋକ ବୋଲେଇ ତୁମକୁ ନିତି ଦିନ ସୁମରଣା କରି ଆନନ୍ଦ ଭୋଗୁଥିଲି, ମୁଁ ଆଉ ସେ ଜୀବନର ନୁହେଁ—ମୋ'ର ଆଉ ସେ ଅପୂରୁବ ଆନନ୍ଦ ନାହିଁ—ସେ ଅଚଳା ଭକ୍ତି ନାହିଁ—ମତେ ତୁମେ ଅଚଳା ସମ୍ପତ୍ତି ଦେଇ ମୋର ଭକ୍ତି ନେଲ, ମୋ ଜାତି ନେଲ ।"

---

## ସତ୍ୟ ଲାଗି ଜୀବନ ମୁରୁଛିଲେ

[ ୧ ]

ଦିନେ ହରିଶ୍ଚନ୍ଦ୍ର ଅଯୋଧ୍ୟା ରାଇଜର ରଜା ହୋଇଥିଲେ । ଦାନ ଧରମରେ ତାଙ୍କଠୁଁ ବଳି କେହି ନାହିଁ କି ନଥିଲା । ତାଙ୍କ ରାଣୀ ଚନ୍ଦ୍ରମତୀ ତାଙ୍କର ପରି ବଡ଼ ଗୁଣର ଥିଲେ ।

ହରିଶ୍ଚନ୍ଦ୍ର ଯିମିତି ସତ୍ୟବନ୍ତ ପୁରୁଷ, ଚନ୍ଦ୍ରମଣି ସିମିତି ତାଙ୍କ ସତୀ ସାଧ୍ୱୀ ସ୍ତ୍ରୀ । ଏକଲୁଆଟରେକ ଦୁହେଁ ଏକଇ ଧାତୁରେ ଗଢ଼ିତ । ବାପ ମାଆ ଓଳ ପୁଅ ଜନମ ହୋଇଚନ୍ତି । ପୁଅଙ୍କ ନାଆଁ ଲୋହିତାକ୍ଷ । ରୂପ ଗୁଣରେ ଲୋହିତାକ୍ଷଙ୍କୁ କେହି ବାହୁନ ପାରବ ନାହିଁ । ବାପ ମାଆ ଯୋ ବାଟରେ ଯା’ ବୋଇଲେ ସେଇ ବାଟରେ ଯିବା ପୁଅ ଲୋହିତାକ୍ଷ, ଏଡ଼େ ସୁଧାର ଯେ ହଳଲ ପାଣିରେ ଗୋଡ଼ ଦେବେ ନାହିଁ । ଲୋହିତାକ୍ଷ ଅବାଟରେ ଯିବାର ପିଲ ନୁହନ୍ତି—ଗୁଲଗଲା ସଗଡ଼ରେ ହାତ ଦେବାର ନୁହନ୍ତି । ବାପ ମାଆର ଭଲ ଗୁଣ ଭଲ ସଭାବ ପୁଅ ଉପରେ ଛାପ ମାଇଲା ପରି ପଡ଼ି ଯାଇଚ ।

ରଜା ରାଣୀଙ୍କର ସେହି ଗୋଟିକ ବୋଲି ପୁଅ । ସେ ପୁଅ, ପୁଅରେ ସାଏ । ସେପରି ସୁନା ପରି ପୁଅ ଲୋହିତାକ୍ଷ ସିନେହ ସରଗର ସୁନା ଦୋଳିରେ ଦୋହଲି ଦୋହଲି, ପହଞ୍ଚି ପହଞ୍ଚି ବଢ଼ିଚନ୍ତି । ତା ବୋଲି ଲୋହିତାକ୍ଷ ରଜା ଗୁମାନରେ ଫୁଲିଫାଙ୍କିଆ ହେବାର କଏ କେବେ ଦେଖି ନାହିଁ କି ଶୁଣି ନାହିଁ । ତାଙ୍କର ତ ଗରବ ଗୁମାନ ନାହିଁ—ସହଜରେ କାହା ଉପରେ କେଳୁ ନାହିଁ କି ଅହଙ୍କା ନାହିଁ । ତାଙ୍କୁ ଦେଖିଲି ସେକାଳର ଲୋକେ କହନ୍ତି, ‘ଯିମିତି ଗଛର ସିମିତି ମଞ୍ଜି—ଗୃଠ ଘର ପୁଅ ଗୃଠ, ଭାଟ ଘର ପୁଅ ଭାଟ ।’ ସତକୁ ସତ ଲୋହିତାକ୍ଷ ବାପର ଓଳ ପୁଅ—ସତେ ଯିମିତିକି ବାପଠାରୁ ସବୁ ଗୁଣ, ସବୁ କଳା, ସବୁ ଠାଣି ଗୋଟାରଙ୍ଗେ ଛଡ଼େଇ ଆଣିଚନ୍ତି । ସେଇଥିପାଇଁ ସିନା ସାନ ବଡ଼ ଧନୀ ନିଧନୀ ସବୁଙ୍କ ଠେଇଁ ତାଙ୍କର ସମାନ ଭାବ । ନହର ବାହାର ସବୁଠିର ଲୋକେ ସେଇଥି ପେଇଁ ଲୋହିତାକ୍ଷ ବୋଇଲେ ଜୀବନ ମୂରୁଛି ଦେବେ—ତାଙ୍କଠି ଏତେ ସିନେହ ।

ଏତେ ସିନେହରେ ଏତେ ସୋହାଗରେ ଯେ ବଢ଼ିଚନ୍ତି ତାଙ୍କର ଉପରେ ଏତେ ଦୁଖର ଚଡ଼କ ପଡ଼ିବ ବୋଲି କାହା ମନରେ ଥିଲା ? ଅଯୋଧ୍ୟା ରାଇଜର ରଜାରାଣୀ ପରଘରେ ବିକା ହେବେ, ସୁନା କୁଣ୍ଢେଇ ପରି ପୁଅକୁ ପର ଦୁଆରରେ ଗୋଲି ରଖେଇବେ ଏ୍କା କିଏ ପାଞ୍ଚିଥିଲା ?

[ ୨ ]

ହରିଶ୍ଚନ୍ଦ୍ର ରଜାଙ୍କ ଦାନ ଧରମ ଦେଖି, ତାଙ୍କର ନାଆଁ ଗାଆଁ ବଢ଼ିବାର ଶୁଣି, ହାଇପଟିଆ କୁଟୁକୁଟିଆ ବିଶ୍ୱାମିତ୍ର ଋଷିଙ୍କର ଆଉ ସହିଲା ନାହିଁ । ହରିଶ୍ଚନ୍ଦ୍ର କମିତି ସତ୍ୟବନ୍ତ ରଜା, କମିତି ସତ୍ୟ ପାଳନ୍ତି ତାହା ପରଖି ଦେଖିବା ପାଇଁ ବିଶ୍ୱାମିତ୍ରଙ୍କ ମନ ବଳିଲା ।

ବିଶ୍ୱାମିତ୍ର ଦିନେ ବାହ୍ମଣ ବେଶରେ ଆସି ଅଯୋଧ୍ୟା ରାଜନଅରରେ ମିଳିଲେ । ଦେବତା ବାହ୍ମଣଙ୍କଠି ହରିଶ୍ଚନ୍ଦ୍ରଙ୍କର ଅଟଳା ଭକ୍ତି । ବାହ୍ମଣଙ୍କୁ ଅମାନ୍ୟ କରିବାର ସେ ଜାଣନ୍ତି ନାହିଁ । ବାହ୍ମଣର ଯୋ'ଥିରେ ସନ୍ତୋଷ ହେବ ତାହା କରିବାକୁ ହରିଶ୍ଚନ୍ଦ୍ର କେବେ ପଛଘୁଞ୍ଚା ଦେବାର ରଜା ନୁହନ୍ତି ।

ବିଶ୍ୱାମିତ୍ର ଏହା ଜାଣନ୍ତି— ଜାଣି ଜାଣି ତାଙ୍କୁ ପରଖିବାକୁ ଆସିଚନ୍ତି । ବାହ୍ମଣ ଦ୍ୱାରକୁ ଆସିଚନ୍ତି ଜାଣି ରଜା, ରାଣୀ, ଯୁବରାଜ ତିନହେଁ ବଡ଼ ମାନ୍ୟରେ ତାଙ୍କୁ ପାଛୋଟି ନେଲେ— ବାହ୍ମଣଙ୍କୁ ନାନା ପ୍ରକାର ଫଳ ମୂଳ ଭୁଞ୍ଜିବାକୁ ଦେଲେ । ବାହ୍ମଣ କୋଉଥିରେ ହେଲେ ତୃପତ ହେଲେ ନାହିଁ—ମାଗି ବସିଲେ ଗୋଟାକଯାକ ଅଯୋଧ୍ୟା ରାଇଜ ।

ରଜା ହରିଶ୍ଚନ୍ଦ୍ର ତ ସତ୍ୟବନ୍ତ ବୋଲି ତିନି ଭୁବନରେ ଡାକବଜା—ସତ୍ୟ ଭାଙ୍ଗିବା ତାଙ୍କ ଜାତକରେ ନାହିଁ । ସତ୍ୟରୁ ଟଳେଟହଲେ କେହିଦିନ ସେ ଜାଣନ୍ତି ନାହିଁ । ବାହ୍ମଣର ଉପରୋଧ ତୁଟି ନ ପାରି ନେଇ ଗ୍ଲାଡ଼ ରଜା ହରିଶ୍ଚନ୍ଦ୍ର ମଥାରୁ ମୁକୁଟ କାଢ଼ି ବାହ୍ମଣ ପାଦତଳେ ଥୋଇ ଦେଲେ । ରାଣୀ ତାଙ୍କ ଦେହର ସବୁ ଆଭୂଷଣ ଅଳଂକାର ଶିଠନେଇ ବାହ୍ମଣ ହାତକୁ ବଢ଼େଇ ଦେଲେ । ଠିକଏ ହେଲେ ତାଙ୍କର କଷ୍ଟବଟି ଥାଆନ୍ତା ! ବାପ ମାଆଙ୍କ ଦାନ ଦେଖି ଲୋହିତାଶ୍ୱ ମଧ୍ୟ ତାଙ୍କ ଠିକ ଦେହଟିରେ ଯାହା ଯାହା କଳଙ୍କଡ଼ଆ ମାଳି ଲାଗି ବଢ଼ିଥିଲା ତାହା ସବୁ ଭୁଛେଇ ବାହ୍ମଣ ମୂଳେ ସମରପି ଦେଲେ ।

[ ୩ ]

ବାହ୍ମଣ ଯାହା ମାଗିଲେ ତାହା ଦାନ କରି ହରିଶ୍ଚନ୍ଦ୍ର ରଜା ନିଜର ପୁଅ ମାଇପକୁ ନେଇ ଦାଣ୍ଡରେ ଭିକାରୀ ହୋଇ ବାହାରି ପଡ଼ିଲେ । ନହରରୁ ବାହାରୁ ବାହାରୁ, ଶିଂହ ଦୁଆରେ ଏବଣ୍ଡି ନ ଡେଇଁଣୁ ହରିଶ୍ଚନ୍ଦ୍ରଙ୍କୁ ବାଟ ଓଗାଳି ବିଶ୍ୱାମିତ୍ର ଦାନର ଦକ୍ଷିଣା ମାଗିଲେ । ହରିଶ୍ଚନ୍ଦ୍ର ଗୋଟାକଯାକ ରାଇଜ ରାଜୁତି ତ ଦାନ କରିଚନ୍ତି, ଆଉ ଅଛି କଣ ଯେ ଦାନ ଉପରେ ଦକ୍ଷିଣା ଦେବେ । ରଜା କହିଲେ ଦକ୍ଷିଣା ପାଇଁ ଆମ ତିନିଜଣକୁ ନିଅ । ଦକ୍ଷିଣାଟାକୁ ବାକି ବକର ତଳେ ଗଡ଼ୋଉଇ, ପିଲା କନ୍ଦାର ମିଶେଇ ଠିଆ ଗୋଟେଡ଼ ଅସୁଲ କରି ପକେଇବା ପାଇଁ ବିଶ୍ୱାମିତ୍ର ଋଷି ରଜା, ରାଣୀ ରାଜକୁମାର ତିନିହିଁଙ୍କୁ ନେଇ କାଶୀ ବଜାରରେ ବିକିବାକୁ ଗଲେ । ଦାନବୀର ହରିଶ୍ଚନ୍ଦ୍ର ଆଜି ବାହ୍ମଣଠାରେ ଋଣୀ—ଆଜି ପଥର ଭିକାରୀ—ଆଜି ନିଜକୁ ବିକିବା ପାଇଁ, ନିଜର ପୁଅ

ମାଇପକୁ ବିକେଇବା ପାଇଁ କାଶୀ ବଜାରରେ ଠିଆ । ଅଯୋଧ୍ୟା ରାଇଜର ରଜା, ରାଣୀ, ଯୁବରାଜ ଆଜ ନିଜନିଜକୁ ବିକିବା ପାଇଁ ଦାନ୍ତରେ କୁଟା କାମୁଡ଼ି ମୁଣ୍ଡରେ ଘାସ ବଡ଼େ ବଡ଼େ ଧରି ଦାଣ୍ଡ ମଝିରେ ଗୋଡ଼ ଭାଙ୍ଗି ଛିଡ଼ା ହୋଇଚନ୍ତି ।

ରଜା ହରିଶ୍ଚନ୍ଦ୍ର ଡାକି କହୁଚନ୍ତି—"ମୋ ମୂଲ୍ ଦି'ତୋଳା ସୁନା—ମତେ କିଏ କିଣୁଚ କିଣ ! ମତେ ଯୋ'କାମରେ ଲଗେଇବ ମୁଁ ସେ କାମରେ ଲାଗିବି—ମୋ ମୂଲ୍ୟ ଏ ବାହ୍ମଣଙ୍କୁ ଦିଅ, ମୋ ଋଣ ଶୁଝା ହେବ ।"

ରାଣୀ ଚନ୍ଦ୍ରମତୀ କହୁଚନ୍ତି, "କିଏ ଅଛ କାଶୀବାସୀ ! ମତେ କିଏ କିଣିବ ଚାକିରାଣୀ କରି—ମୋ ମୂଲ ତୋଳେ ସୁନା । ସୁନା ତୋଳେ ଏ ବାହ୍ମଣଙ୍କୁ ଦିଅ, ମତେ ଋଣ ବନ୍ଧନରୁ ମୁକୁଳାଅ ।"

ଲୋହିତାକ୍ଷ କହୁଚନ୍ତି—"ମୋ ମୂଲ୍ ଅଧ ତୋଳେ ସୁନା—ମତେ କିଏ କିଣୁଚ ଚାକର କରି—ମୋ ବାପ ମାଆଙ୍କୁ ଋଣ ଜାଲରୁ ମୁକ୍ତ କର ।"

[ ୪ ]

ରାଣୀ ଚନ୍ଦ୍ରମତୀଙ୍କ ରୂପ ରଙ୍ଗ ଦେଖି ଜଣେ ହୋଟୁରୁଣୀ ଆସି ତାଙ୍କୁ ମୁଲେଇଲା । ଏ ସଙ୍କଟରୁ ମୁକୁଳେଇବା ପାଇଁ ଚନ୍ଦ୍ରମତୀ ମନେ ମନେ ବିଧାତାଙ୍କୁ ବହୁତ ଜଣେଇଲେ । ଅସତୀ ହୋଟୁରୁଣୀ, ସତୀ ଚନ୍ଦ୍ରମତୀଙ୍କୁ କିଣି ନେବାକୁ ମନ ବଳେଇ କଣ୍ଟରୁ ଧନ କାଢ଼ୁଚି ଏତିକିବେଳେ ଦଇବରେ କୁଆଡ଼ୁ ଜଣେ ବାହ୍ମଣ ଆସି ବିଶ୍ୱାମିତ୍ରଙ୍କ ହାତରେ ଦେଢ଼ ତୋଳା ସୁନା ଦେଇ ଚନ୍ଦ୍ରମତୀ ଆଉ ଲୋହିତାକ୍ଷଙ୍କୁ କିଣି ନେଲା—ମାଆ ପୁଅ ବିକେ

ବେଣୀ୍ୟାର ଫାନ୍ଦରୁ ଖସି ଗଲେ । ଜଗନ୍ନାଥେ ସଖି ଚନ୍ଦ୍ରମଣ୍ଡଳ ଗୁହାର ଶୁଣିଲେ ।

ବେଳ ରଡରଡ ହେଲଣି, ଧର୍ମ ଦେବତା ବୁଡ଼ୁ ବୁଡ଼ୁ ହେଇ ମାଆକୋଳକୁ ପାଖେଇଲେଣି । ହରିଶ୍ଚନ୍ଦ୍ରଙ୍କୁ ମୁଲେଇବା ପାଇଁ ଏ ପର୍ଯ୍ୟନ୍ତେ କେହ୍ବ ହେଲେ ଗରାଖ ଆସି ନାହାନ୍ତି । ବିଶ୍ୱାମିତ୍ର ହରିଶ୍ଚନ୍ଦ୍ରଙ୍କୁ ଏତକ ଚେତେଇ ଦେଲନ୍ତି ରଜାଙ୍କ ଛାତିରେ ଦାଉଁକନା ହେଲା । ବିଶ୍ୱାମିତ୍ର ଏଣେ ତଳ ହେଉଚନ୍ତି—କ୍ରୋଧ ସମ୍ଭାଳି ନପାରି ତାଙ୍କ କଥାର ଠିକଣା ରହୁନାହିଁ । ରାଗିଲେ ଋଷିଙ୍କ କଥା ମଧ ବେଙ୍ଗୁଣି ଯାଏ—ତୁଣ୍ଡ ଖନା ମାରିଯାଏ । ହରିଶ୍ଚନ୍ଦ୍ର ମାଛକ ପଥର ପାଲଟିଲା ପରି ଅନେଇ ବହିଚନ୍ତି, କେତେବେଳେ କୁଆଡ଼ୁ ଗରାଖ ଆସି ପହଞ୍ଚିବ ପରା ।

ଦେଖୁ ଦେଖୁ ବେଳ ବୁଡ଼େ ନ ବୁଡ଼େ—କଣ୍ଟସି ଗଡ଼ଲା ଆସି—ଆଉ କାଳ ନାହିଁ, ଏତିକବେଳେ ଦଇବା ଯୋଗକୁ ଜଣେ କଳା କଟିକଟି ମଶାଣିଜଗା ହାଡ଼ୀ ଆସି ରଜାଙ୍କୁ ଚାହୁଁଚନ୍ତି ଚଳପାଯାଏଁ ନିରେଖି ପରଖି ସାର ଖୋସଣିରୁ ଦୁ'ତୋଳା ସୁନା କାଢ଼ି ଋଷିଙ୍କ ହାତରେ ଦେଇ ହରିଶ୍ଚନ୍ଦ୍ରଙ୍କୁ କିଣି ନେଲା । ରଜା ହରିଶ୍ଚନ୍ଦ୍ର ସେ ମଡ଼ା ଚଣ୍ଡିଆର କଣା ଦାସ ହୋଇ ଦରବାର ମଶାଣି ଜଗି ମଡ଼ାପୋଡ଼ା ମୂଲ ଆଦାୟ କରିବା କାମରେ ଲାଗିବେ । ଯୁ'ତାଙ୍କୁ ସେତେ ବାଧିଲା ନାହିଁ, ତାଙ୍କର ବିକ ହବା ଆଗରୁ ତାଙ୍କ ଅଜଣାରେ ତାଙ୍କ ରାଣୀ ଚନ୍ଦ୍ରମଣ୍ଡି, ତାଙ୍କ ଅନ୍ଧର ଲଉଡ଼ ହୃଦର ପଦକ କୃପଣପେଟିଆ ଧନ ଲୋହିତାକ୍ଷ ପରି ଘରେ ବିକ ହେଇଚନ୍ତି, ଯୁ' ତାଙ୍କୁ ଭାରି ବାଧିଲା । ଆଖି ଲୁହ ଆଖିରେ ମାରି, ବୁକୁକୁ ପଥର କରି, ଧରମକୁ ଚାହିଁ, କାନମୁଣ୍ଡା ଆଉଁସି ତୁନ ହେଇ ସେ ମଶାଣିପଦାରେ ହାଡ଼ୀ ଦୁଖ ପଡ଼ଲେ ।

ରଜା ହରିଶ୍ଚନ୍ଦ୍ର ଗଲେ ଏକ ଆଡ଼େ, ରାଣୀ ଚନ୍ଦ୍ରମତୀ ତାଙ୍କ ଏକଇରବଳା ଲୋହିତାକ୍ଷକୁ ଘେନି ଗଲେ ଅନ୍ୟଆଡ଼େ । ଆଉ ତିନଙ୍କ ସଙ୍ଗେ ତିନଙ୍କର ଭେଟ ନାହିଁ । ଯେ ଯୋଉଠି ନିଜ ନିଜର ପେଟ ନିଜକରିରେ ଲଗି ଗଲେ ।

ହରିଶ୍ଚନ୍ଦ୍ର ଚଣ୍ଡାଳର ମଶାଣି ଜଗା, ମଡ଼ପୋଡ଼ା କାମରେ ଖଟିଲେ । ଚନ୍ଦ୍ରମତୀ ବାହ୍ମଣ ଘରେ ରହି ଘୋରଣାରେ ଗହମ ଚୂରିଲେ । ଲୋହିତାକ୍ଷ ମାଆଙ୍କ ପାଖରେ ରହି ବାହ୍ମଣଙ୍କ ପୂଜା ଅରଚନା ପାଇଁ ବଗିଚାରୁ ଫୁଲ ତୋଳିବା କାମରେ ଲଗିଲେ । ଏହିପରି କେତେ ଦିନ ବିତିଗଲା, କେତେ କେତେ ଦୁଖର ରାତି ପାହିଗଲା ।

[ ୬ ]

ଦିନକର ଗାଈ ବାହୁଡ଼ା ବେଳ—ସଞ୍ଜ ମାଡ଼ି ଆସୁଚି— ଦୀପ ଲଗି ନାହିଁ—ଗାଆଁ ପିଲାଙ୍କ ସଙ୍ଗେ ମିଶି ବଗିଚାରେ ପଶି ଲୋହିତାକ୍ଷ ଆଉରି ଫୁଲ ତୋଳୁଚନ୍ତି । ଫଟା କପାଳକୁ କାହିଁ ଥିଲା ନାଗ ସାପ, ଫଣା ଟେକି ଲୋହିତାକ୍ଷର ପାଦକୁ କରି ଦଂଶି ଦେଲା । ସାଙ୍ଗ ସାଥି ପିଲାଏ ଲୋହିତାକ୍ଷକୁ କାନ୍ଧେଇ ମାଆଁ କତିକି ଟେକି ଆଣି ମାଆଁ ଆଗେ ପିଲାକୁ ଲମ୍ବ କରି ଶୁଆଇ ଦେଲେ । ଏକଇରବଳା ଲୋହିତାକ୍ଷର ଏ ଦଶା ଦେଖି ମାଆଁଙ୍କ ଚେତା ବୁଡ଼ିଗଲା ।

ଆଜି ଚନ୍ଦ୍ରମତୀ ଅଯୋଧ୍ୟା ରାଇଜର ରାଣୀ ନୁହନ୍ତି—ସେ ଆଜି ବାହ୍ମଣ ଘରର ଦାସୀ । ଦାସୀ ପୁଅର ମଡ଼ାକୁ ମଶାଣିପଦାକୁ ଏ ରାତି ଅନ୍ଧାରରେ ନେଉଚି କିଏ ? ନିଠୁର ବିଧିର ଏ କି ଲୀଳା ?

ଜନମ କରିବା ମାଆଁ, ତାର ଏତେ ଡେଷା ଉପାସ, ଏତେ ବାର ବରଷର ଏକଇବ୍‌ଇଳାକୁ ନିଜ ହାତରେ ପୋଡ଼ିବାକୁ ନେବ କିମିତି ?

ନ ନେଲେ ତ ନ ଚଳେ । ଲେମ୍ବୁଚାଷ କଅଣ ବାସି-ମଡ଼ା ହେବ ? ବହୁ ଯାହା କପାଳେ ଲେଖିଛି ତାହା ଆନ କରିବ କିଏ ?

କୋହ ବିକର୍ଥନାରେ ଗୁଳ ଫାଟି ଯାଉଛି—ପିନ୍ଧିବା ବସନ ଲୁହରେ ଭିଜି ଯାଉଛି—ଚନ୍ଦ୍ରମଣି ଲେମ୍ବୁଚାଷର ମଡ଼ା ଘେନି ମଶାଣି ଆଡ଼କୁ ଚାଲିଲେ—କେହି ସାହା ନାହିଁ କି ଭରସା ନାହିଁ, କି ଆହା କରିବାକୁ କେହି ନାହିଁ—ଏକୁଟିଆ ଅନ୍ଧାର ଘଡିରେ ଲେମ୍ବୁଚାଷର ଶବକୁ କାନ୍ଧେଇ ଚନ୍ଦ୍ରମଣି ମଶାଣିପଦାକୁ ଚାଲିଲେ ।

[ ୭ ]

ମୁହଁକୁ ମୁହଁ ଦିଶୁନାହିଁ—ଚୁଞ୍ଚ ଭୁକିବ ନାହିଁ ଇମିତି ଅନ୍ଧାର । ମେଘ ଘୋଟି ଆସୁଛି । ସବୁ ବାଆ ବତାସଯାକ ରୁଣ୍ଡ ହୋଇ ଅଣଓଣ ରଡ଼ ପକେଇ ମାଡ଼ି ଆସୁଛନ୍ତି । ଗଛ ବୁରୁଛଯାକ ସତେ ଯିମିତି ବାଟୋଇଙ୍କ ଉପରେ ମାଡ଼ିପଡ଼ୁଛନ୍ତି । ଖଣ୍ଡିଆଭୂତ ଚକର ମାରି ଧୂଳି ସାଉଁଟି ତାଳଡୁଆ ଉଡ଼େଇ ଗଗନ ଭେଦି ଉପରକୁ ଉଠୁଛି । ରହି ରହି ଦଣ୍ଡେକେ ଘଡ଼ିକେ ବିଜୁଳି ଚମକୁଛି । ବିଜୁଳି ମାଇଲାବେଳେ ଗଛ ପତରଯାକ ମୁଣ୍ଡ ହଲେଇ ହାତ ଠାରି ଡାକିଲା ପରି ଲାଗୁଛି । ମଶାଣୀ ଭୂଇଁରେ ଜଗିଛି ଜଣେ ଯମଦୂତ ପରି ଚଣ୍ଡାଳର ନଉକର, ଧରିଛି ହାତରେ ଗୋଟେ ଯମ ଦାଢ଼ କାତି ।

ଯାଇ ଷହଞ୍ଚିଲେ ସେଇଠି ଅଠଯାଧ୍ୟା ଗ୍ରଛଜର ଗ୍ରଣୀ ଆପଣାର ମଲ୍ଲ ପିଲକୁ କୋଳରେ ଧେନ ଘପିଫଡ଼ା ଗଣ୍ଡେ ଦଗ୍ରଣ୍ଡି ଆଶି ଚହିଁରେ ରଇ ସଜେଇ ତା' ଉପରେ କୋଟୀନଧି ଏକଇରବଳାର ଶବକୁ ଶୁଆଇ ଦେଇ, ଚନ୍ଦ୍ରମଣୀ ବସି ପଡ଼ିଚନ୍ତି— 'ମୁଖାଗ୍ନି' ଦେବାକୁ ତାଙ୍କ ହାତ ଯାଉନାହିଁ—ତୋ' ମୁହଁ ପୋଡ଼ୁ ବୋଲି ଢନେ ହେଲେ ଯାହାକୁ କନ୍ଧ ଲେଉଥେଇ ଖାଳି ଦେଉ ନାହାନ୍ତି ମାଆଁ ହୋଇ ଚନ୍ଦ୍ରମଣୀ ତା' ମୁହଁରେ ଆଜ ନିଆଁ ଦେବେ କମିତ ? ଚନ୍ଦ୍ରମଣୀ ଭୁଛା ବାହୁନ ବାହୁନ କାନ୍ଦୁଚନ୍ତି—

"ଗଲ୍ଲ ପୁତ ବାହୁଡ଼ ନଇଲ୍ଲ
ଆଲେ, ଗଣ୍ଡିଧନ ଯାଇ ମୋର ସବୁ ତ ସଇଲ୍ଲ ।
ଆଉ, ଫଳବାର ଆଶ ନାଇଁ ମୋର
ଆଲେ, ଫଳବାର ଫଳ ମୋର ଗଲ୍ଲ ଯମପୁର ।

ସତେ ଯେମିତ ମଶାଣୀ ହରିଶ୍ଚନ୍ଦ୍ର ଡ଼ୁକୁରଇ ଥିଲ୍ଲ ଚେଇଁ ଉଠି ଆଖି ତରଟି କାନେଇଲ୍ଲ—କାନ ଡେରି ଶୁଣିଲ୍ଲ ଶତଲ୍ଲ ଲୋକର କାନ୍ଦୁଣି । ତା' ବୁକୁ ଭିତରଟା କାହିଁକି କେଜାଣି ଦୁହିଁ ହେଇଗଲ୍ଲ—କହିଲ୍ଲ, 'କୋଉ ଅଭାଗର କପାଳ ଫାଟିଲ୍ଲ' ଏହା କହି ବେଗ ସମ୍ଭାଳି ନ ପାରି ଉଦବେଗ ଉନମତ ହୋଇ ଧାଇଁଲ୍ଲ— ଧାଇଁ ଯାଇ ଶତଲ୍ଲ ଲୋକଟିର କତରେ ପହଞ୍ଚି ଯାହା ଦେଖିଲ୍ଲ ସେଇଥିରୁ ଆଖି ପିଛୁଡ଼ ପାରିଲ୍ଲ ନାହିଁ ।

ହେଲେ ତାର ନଠୁର କାମ ଆଗରେ ତାର ମାୟାଟିକକ ଉଭାନ ହେଇଗଲ୍ଲ—ଅଙ୍ଗଣା ଗ୍ରଇଜରୁ ଯୋଉ ସିନଦ୍ଧ ସୋହାଗଟିକ ତା ଗ୍ରଣ୍ଡି ଆରେ ପଶି ଆଉଣ୍ଡେଇ ହେଉଥିଲ, ତାହା ସେ ବରଜ ଦେଇ ଗରଜ ହେଇ କହିଲ୍ଲ—"ହଇଲେ ତୁ କଏଁଲ୍ଲ ?

ମଡ଼ାପୋଡ଼ା ମୂଲ ନ ଦେଇ ଏ ମଡ଼ାଟାକୁ ତୁ ରଇରେ ଚଢ଼େଇ ଦଉଚୁ—ଏଡ଼େ ସାହାସ ତୋର !” ଏହା କହି ଶବଟାକୁ ରଇରୁ କାଟି ଫିଙ୍ଗି ଦେଲା ।

ରାଣୀ ଚନ୍ଦ୍ରମତୀ ଆଉ ହୃଦର କୋହ ସମ୍ଭାଳି ନ ପାରି ବାହୁନି ବାହୁନି କାନ୍ଦିଲେ—“ବାପ ମୋର ଲୋହିତାକ୍ଷ ! ତୁ ସୁନା ଦୋଳିରେ ବଢ଼ିଥିଲୁ । ଜୀଇଁଥିଲେ ଦିନେ ତୋ ମୁଣ୍ଡରେ ରାଜମୁକୁଟ ଶୋଭା ପାଇଥାନ୍ତା । ତୁ ମୋର ଅନ୍ଧାରଲଉଡ଼ି ଏକଇରବଳା ଗଲୁ କୋଉଆଡ଼େ । ତୋ ବାପ ଅଯୋଧ୍ୟା ରାଜନ ହରିଶ୍ଚନ୍ଦ୍ର ଏବେ ଯାଇ ରହିଲେ କାହିଁ ? ତତେ ଏ ଗରଭରେ ଧରି ଅଣ୍ଡାଠଉ ଭେଣ୍ଡିଆ ଯାଏ ପାଳିଥିଲି । ତୋ ଶବପୋଡ଼ା ମୂଲ ପାଞ୍ଚଣ୍ଡା କଉଡ଼ି ଦେଇ ନ ପାରି ଶେଷରେ ତତେ ଅପୋଡ଼ା ପକେଇ ଯିବି ? ମୁଁ ଅନାଥିମା ହୀନ କପାଳୀ । ଏଠି ଆଉରି ଏହା ଦେଖିବାକୁ ରହିବି ? ହାଇରେ ବିଧାତା ! ଏ ଜୀବନକୁ ନ ନେଇ କାହିଁ ଛଳବଳ କରୁଛୁ ?

[ ୭ ]

ଏ ବାହୁନା ଶୁଣି ମଶାଣୀ ଜଗାଳି ଗୁଣ୍ଡିଆ ଦାଉଁ ପରି ହେଲା—ସେ ହରିଶ୍ଚନ୍ଦ୍ର ନାଆଁ ଶୁଣି ଚମକି ପଡ଼ି ପଛଘୁଞ୍ଚା ଦେଲା—ନିଜକୁ ଥରେ ଚହ୍ଲି ନେଇ ପୁଣି କାନ ପାତି ଶୁଣିଲା— ଆଉ ଥୟ ଧରି ପାରିଲା ନାହିଁ, ଆଖି ପଚା ନ ପଡ଼ୁଣୁ ବିଜୁଳି ପରି ଝପଟି ଯାଇ ଚନ୍ଦ୍ରମତୀଙ୍କୁ ପୋଟଳି ପକେଇଲା । ଚନ୍ଦ୍ରମତୀ ଚମକି ପଡ଼ିଲେ—ତାଙ୍କ ଆଖି ବୁଜି ହୋଇଗଲା ।

ମଶାଣୀ ଜଗା ନିଜର ପରିଚୟ ଦେଇ କହିଲା, "ମୁଁ— ମୁଁ ହିଁ ସେହି ଅଧମ ଚଣ୍ଡାଳ ହରିଶ୍ଚନ୍ଦ୍ର—ମତେ କ୍ଷମା କର ଚନ୍ଦ୍ରମତୀ ! ମୁଁ ଚଣ୍ଡାଳ ତମକୁ ଛୁଇଁ ପକେଇଲି, ତୁମ କାୟା ଭ୍ରଷ୍ଟ କରିଦେଲି ।

ତହୁଁ ହରିଶ୍ଚନ୍ଦ୍ର ପଚାରନ୍ତେ, ସାପ କାମୁଡ଼ାରେ ରୋହିତାକ୍ଷର କିମିତି ମରଣ ହେଇଚି, କିମିତି ରାଣୀ ଏକୁଟିଆ ଏ ମଡ଼ାକୁ କାନ୍ଧେଇ ଏ ଅନ୍ଧାର ଝଡ଼ ବରଷା ରାତିରେ ମଶାଣୀ ପଡ଼ାକୁ ଆସିଚନ୍ତି, ଚନ୍ଦ୍ରମତୀ ଏ ସବୁ କଥା ଗୋଟି ଗୋଟି କରି ହରିଶ୍ଚନ୍ଦ୍ରଙ୍କ ଆଗରେ ବାଢ଼ିଲେ ।

ସତ୍ୟବନ୍ତ ହରିଶ୍ଚନ୍ଦ୍ର ଏ ସବୁ କଥା ବୁଝିଲେ ସତ, ମାତ୍ର ମଡ଼ପୋଡ଼ା କଉଡ଼ି ଦେଉଚି କିଏ ? କଉଡ଼ି ଯଦି ଦେଇ ନପାରିବ ତେବେ ଆପେ ଏ କାତିରେ ହାଣ ଖାଇବା ପାଇଁ ଠିଆ ହୁଅ ବୋଲି ହରିଶ୍ଚନ୍ଦ୍ର ଚନ୍ଦ୍ରମତୀଙ୍କୁ କହିଲେ । ହରିଶ୍ଚନ୍ଦ୍ରଙ୍କ ଭଇରବୀ କାତିରେ ହାଣ ଖାଇ ମରିବାକୁ ଚନ୍ଦ୍ରମତୀ ମୁଣ୍ଡ ପତେଇ ଦେଲେ ଓ ହରିଶ୍ଚନ୍ଦ୍ର ତାଙ୍କୁ ନିଜ ରୂପରେ ହାଣିବାକୁ କାତି ଉଞ୍ଚେଇଲେ । ଏତିକିବେଳେ ବିଶ୍ୱାମିତ୍ର ନିଜେ ଆସି ତାଙ୍କ ଆଗରେ ଉଭା ହୋଇଗଲେ ।

ହରିଶ୍ଚନ୍ଦ୍ରଙ୍କର ସତ୍ୟ ନିଷ୍ଠା ଦେଖି ଋଷି କାବାଭୂତ ହୋଇଗଲେ । ଋଷି ମଡ଼ାର କାନରେ ସଞ୍ଜୀବନୀ ମନ୍ତ୍ର ଫୁଙ୍କି ଦେଲାରୁ ରୋହିତାକ୍ଷ ବଞ୍ଚି ଉଠିଲା । ହରିଶ୍ଚନ୍ଦ୍ରଙ୍କ ମୁଣ୍ଡରେ ରାଜୁତି ପାଡ଼ି ବାନ୍ଧି ଦେଇ ତାଙ୍କ ଅଯୋଧ୍ୟା ରାଇଜ ତାଙ୍କୁ ସମରପି ଦେଲେ ।

ଋଷି ବିଶ୍ୱାମିତ୍ର ତାଙ୍କ କଷଟି ପଥରରେ କଷି ପରଖି ବୁଝିଲେ, ହରିଶ୍ଚନ୍ଦ୍ର ପରି ସତ୍ୟବନ୍ତ ପୁରୁଷ କୋଟିକେ ଗୋଟିଏ, ବୁଝିଲେ ଚନ୍ଦ୍ରମତୀ ପରି ସତୀ ସତକୁ ସତ 'ଶଅକେ ସତୀ ଲକ୍ଷେକେ ପାଉବଣି' ବୁଝିଲେ ଲୋହିତାକ୍ଷ ଏକା ବାପର ପୁଅ । ତିନିଙ୍କି ତିନିହେଁ ସତ୍ୟ ଲାଗି ଜୀବନ ମୁରୁଛି ପାରନ୍ତି । ବିଶ୍ୱାମିତ୍ର ତାଙ୍କ ହାଇପୁଟିଆ ସ୍ୱଭାବ ତାଙ୍କ ପରଶିଶ ଦେଖି ନ ପାରିବା ସ୍ୱଭାବ ଲାଗି ମନେ ମନେ ବଡ଼ ସରମ, ବଡ଼ ପରାଭବ ପାଇଲେ । ହରିଶ୍ଚନ୍ଦ୍ର, ରାଣୀ ଓ ଯୁବରାଜଙ୍କୁ ଦେନ ଅଯୋଧ୍ୟାରେ ଆଗପରି ରାଜୁତି କଲେ । ଆଜ ହରିଶ୍ଚନ୍ଦ୍ର ନାହାନ୍ତି, ଆଜ ଚନ୍ଦ୍ରମତୀ ନାହାନ୍ତି, ଆଜ ନାହାନ୍ତି ଲୋହିତାକ୍ଷ । ମାତ୍ର ଯୁଗେ ଯୁଗେ ତାଙ୍କ କଥା ରହିବ । ହରିଶ୍ଚନ୍ଦ୍ର ସତ୍ୟ ଲାଗି ନିଜ ରାଇଜ ଛାଡ଼ିଲେ ଓ ହାଡ଼ୀର ଗୋଲାମୀ ଖଟିଲେ; ଚନ୍ଦ୍ରମତୀ ଆପଣା ଗିରସ୍ତଙ୍କ ସତ୍ୟ ଲାଗି ଡାଆଣରେ ପୋଇଲି ରୂପେ ବିକା ହେଇ ପରଘରେ ଖଟିଲେ; ଲୋହିତାକ୍ଷ ବାପ ମାଆଙ୍କ ସତ୍ୟ ଲାଗି ନିଜର ଜୀବନକୁ ସୁଦ୍ଧା ମୁରୁଛିଲେ । ଧନ୍ୟ ରାଜା ହରିଶ୍ଚନ୍ଦ୍ର ! ଧନ୍ୟ ରାଣୀ ଚନ୍ଦ୍ରମତୀ ! ଧନ୍ୟ ଲୋହିତାକ୍ଷ !

———

# ସାଧୁ କୁ ସାଧୁ ଚିହ୍ନେ

[ ୧ ]

ଓଡ଼ିଶାର ମହାମଣି ରଜା ପ୍ରତାପରୁଦ୍ର ଦେବ । ତାଙ୍କ ମନ୍ତ୍ରୀ ରାୟ ରାମାନନ୍ଦ । ପ୍ରତାପରୁଦ୍ର ସେବ କାଳର ଓଡ଼ିଶା ରାଜଧାନୀ କଟକ ବାରବାଟିରେ ଗଡ଼ ବାନ୍ଧି ବସେ ହୋଇଥନ୍ତି । ତାଙ୍କ

ମନ୍ତ୍ରୀ ରାୟ ରାମାନନ୍ଦ ଯାଇ ରହୁଥାନ୍ତି ଗୋଦାବରୀ ନଦୀ ତଟସ୍ଥ ରାଜମହେନ୍ଦ୍ରୀ ସହରରେ । ସେ କାଳରେ ଓଡ଼ିଶା ରାଜ୍ୟ ଗଙ୍ଗା ନଦୀଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ, ତାଠୁଁ ଆହୁରି ବଳି ମାଡ଼ି ରହିଥିଲା । ଆଜିଯାଏଁ ଓଡ଼ିଆ ମୁଲକ ମେଦିନୀପୁର ସୀମା ହୁଗୁଳି ନଦୀଠୁଁ ଜୟପୁର ସୀମା ଗୋଦାବରୀ ନଦୀ ପର୍ଯ୍ୟନ୍ତେ ଲାଗିଛି । ଆଜି କାଲିର 'ରାଜମନ୍ଦରୀ' ସହର ଚାରିପଟ ପାହାଡ଼ମାନଙ୍କରେ ସେ କାଳର ଓଡ଼ିଆ ରଜାମାନଙ୍କର ଅନେକ ଉଆସ ନଅରର ଭଙ୍ଗାରୁଜା ଛଟାପଥର ସବୁ ଏଣେ ତେଣେ ଖେଳେଇ ହୋଇ ପଡ଼ିଛି ।

ରଜା ପ୍ରତାପରୁଦ୍ରଙ୍କର ତାଙ୍କ ମନ୍ତ୍ରୀ ରାମାନନ୍ଦଙ୍କ ଉପରେ ବଡ଼ ବିଶ୍ୱାସ । ରାମାନନ୍ଦ ବେଶର ପକ୍ଷଠରେ ରାଜକ ବୁଦ୍ଧିମତ୍ତାରେ ଯିମିତି ଚତୁର ସିମିତି ଧରମକର୍ମ, ଶାନ୍ତମନ୍ତ । ତାଙ୍କ ବୁଦ୍ଧିମତାରେ ରଜା ପରଜା ଉଭୟ କୂଳର ସନ୍ତୋଷ । ଶତ୍ରୁ ମଧ୍ୟ ତାଙ୍କ କଥାରେ ମୋହିତ ହୋଇ ଯାଉଥିଲା । ତାଙ୍କର ସକସିଆ ପଣରୁ ଓଡ଼ିଆ ଦେଶଠାପାକରେ ପୁରା ଶାନ୍ତି ବିରାଜୁ ଥିଲା ।

ରାଜ୍ୟରେ ଶାନ୍ତି ବିରାଜିଲାବେଳେ ରଜାମାନେ ଦେଉଳ ତୋଳାନ୍ତି, ପୋଖରୀ ଖୋଳାନ୍ତି, ନଦୀ ବନ୍ଧାନ୍ତି—ରଜାମାନଙ୍କ ଆଶ୍ରୟ ପାଇ ପଣ୍ଡିତ ଆଉ କବିମାନେ ଗୀତ ଶୋଳକ ପୁସ୍ତକ ଲେଖନ୍ତି । ଏହି ରଜାଙ୍କ ଅମଳରେ ବଳରାମଦାସ 'ଦାଣ୍ଡୀ ରାମାୟଣ' ଲେଖିଥିଲେ, ଆଉ ଜଗନ୍ନାଥ ଦାସ 'ଭାଗବତ' ଲେଖିଥିଲେ । ଅନନ୍ତ ଦାସ, ଅଚ୍ୟୁତ ଦାସ, ଯଶୋବନ୍ତ ଦାସ କାଳରେ ଗାଁ ଗଣ୍ଡା ବୁଲିଆଡ଼େ ବୈଷ୍ଣବ ଧର୍ମ ପ୍ରଚାର କଲେ । ଓଡ଼ିଶା ଦେଶରେ ହରି ନାମର ଗୋଟେ ଢେଉ ଖେଳିଗଲା ।

ପ୍ରତାପରୁଦ୍ର, ରାମାନନ୍ଦ, ଜଗନ୍ନାଥ, ବଳରାମ, ଅଚ୍ୟୁତ, ଅନନ୍ତ, ଯଶୋବନ୍ତ ଏକକୁଆରେକ ସାହା ହୋଇ ଗୋଟାକ ଯାକ ଓଡ଼ିଶା ଦେଶରେ ହରି ନାମର ଗୋଟେ ଖର ସୁଅ ବୁହାଇ ଦେଲେ ।

[ ୨ ]

ଏହି ସମୟରେ ଶ୍ରୀଚୈତନ୍ୟ ଦେବ ତାଙ୍କ ନଦିଆ ନଗର ବୁଲି ପଣ୍ଡିତ ସଭାରେ କହିଲେ—

"ବିଶ୍ୱାସେ ପାଇବ ହରି
ତର୍କେ ବହୁ ଦୂର ।"

ଆଜ ପୁଣି କହି ନଦିଆ ଛାଡ଼ି ଘର ଦୁଆର ଛାଡ଼ି ଖୋଳ କରତାଳ ଧେନ ଓଡ଼ିଶା ଦେଶକୁ ଅଇଲେ । ସେତେବେଳକୁ ବଙ୍ଗ ଦେଶକୁ ପଠାଣମାନେ ଛାରଖାର କଲେଣି । ଜଣେ ପଠାଣ ପିଲା ହରି ନାମ ଶୁଣି ହରିଦାସ ନାଆଁ କହିବାରୁ ପଠାଣେ ତାଙ୍କୁ ବାର ବଜାରରେ ବାଡ଼େଇ ବାଡ଼େଇ ପିଠିରୁ ପୁରେ ଛାଲ ଉଚ୍ଛୁଡ଼େଇ ଦେଲେଣି । ପଠାଣଙ୍କ ଦାଉ ସମ୍ଭାଳି ନ ପାରି ହିନ୍ଦୁଏ ଚୂଟି କାଟି, ଦାଢ଼ି ବଢ଼େଇ, ଲୁଙ୍ଗୀ ପିନ୍ଧି ଆଲ୍ଲାକୁ ଭଜିଲେଣି ।

ଓଡ଼ିଶା ରଜା ପ୍ରତାପରୁଦ୍ରଙ୍କ ନାଆଁ କେବଳ ଡାକବଜା ହୋଇ ପଡ଼ିଚି । ଓଡ଼ିଶାର ନାଆଁ ଶୁଣିଲେ ମେଦିନୀ କଂପୁଚି । ପ୍ରତାପରୁଦ୍ରଙ୍କ ଖଣ୍ଡାଇତ, ଢଳୁଆ, କାଳିଞ୍ଜୀ ସଇନ ଯୁଆଡ଼କୁ ମାଡ଼ି ଯାଉଚନ୍ତି ସିଆଡ଼େ ତରଭୂଣୀ ଗାଈ ବାଟ ଛାଡ଼ି ଦେଉଚି । କି ବାହୁବଳ, କି ଧରମ ବଳ କୋଉଥିରେ ହେଲେ ପ୍ରତାପ-ରୁଦ୍ରଙ୍କୁ ବଳି କେହି ନାହିଁ । ତାଙ୍କ ସମାନ ତାଙ୍କ ମନ୍ତ୍ରୀ ରାମାନନ୍ଦ । ରଜା ମନ୍ତ୍ରୀ ଦୁହିଁଙ୍କି ଦୁହେଁ ସମାନ ଯୋଡ଼ିଚନ୍ତି । ଦୁହିଁଙ୍କି ଦୁହେଁ

ମହା ପଣ୍ଡିତ, ମହା ବଳୟାର—ତର୍କର ପଣରେ କେହି କାହାକୁ ଊଣା ନୁହନ୍ତି ।

ଚଇତନ୍ୟ ଦେବ ଓଡ଼ିଶାର ନାଆଁ ଶୁଣି ଓଡ଼ିଶା ଆଡ଼କୁ ଅଇଲେ—ରଜା ପ୍ରତାପରୁଦ୍ରଙ୍କୁ ଆଉ ତାଙ୍କ ମନ୍ତ୍ରୀ ରାମାନନ୍ଦଙ୍କୁ ଦେଖିବାକୁ ତାଙ୍କର ମନ ବଳିଲା । ତାଙ୍କ ସାଙ୍ଗରେ ନିତ୍ୟାନନ୍ଦ, ରଘୁନାଥ, ହରିଦାସ ହେଉକା ତାଙ୍କର ସାଥିମାନେ ବି ଆସିଲେ । ମହାନଦୀ କୂଳରେ ବାରବାଟୀ ଗଡ଼ଠେଇଁ ପହଞ୍ଚି ମହାରଜା ପ୍ରତାପରୁଦ୍ର ଦେବଙ୍କ ଛାମୁକୁ ଯିବାକୁ ଚଇତନ୍ୟ ଦେବ କେତେ ମନ ବଳେଇଲେ । ମାତ୍ର ଦରଶନ ମିଳି ପାରିଲା ନାହିଁ । ତହୁଁ ଚଇତନ୍ୟ ଦେବ ଚାଲି ଚାଲି ଯେମିତି ଦକ୍ଷିଣକୁ ଯାଇ ରାଜମହେନ୍ଦ୍ରୀ-ଠାରେ ରାମାନନ୍ଦ ରାୟଙ୍କୁ ଭେଟିଲେ । ରାମାନନ୍ଦଙ୍କ ସଙ୍ଗେ ଚଇତନ୍ୟଙ୍କର ଅନେକ ଧରମତତ୍ତ୍ୱ କଥା ବାରତା ଚଳିଲା ।

ଚଇତନ ଦେବଙ୍କ ଅନ୍ୟ ନାଆଁ ଗଉରାଙ୍ଗ । ତାଙ୍କ ଦିହ ଦେଖିବାକୁ ଗୋରା । ସେ ଆମ ଯାଜପୁରିଆ ଓଡ଼ିଶା ବୈଦିକ ବାହ୍ମଣ । ତାଙ୍କ ବାପ ଜଗନ୍ନାଥ ମିଶ୍ରେ ବଙ୍ଗାଳୀଙ୍କ ଗୁରୁଗୋସେଇଁ ହୋଇ ଯାଇ ପୂର୍ବ ବଙ୍ଗଳାର ଶ୍ରୀହଟ୍ଟ ଅଞ୍ଚଳରେ ଘର କରି ରହିଥିଲେ ।' ଆଜି ଯାଏଁ ବି ଓଡ଼ିଆ ବାହ୍ମଣ ଗୋସେଇଁମାନେ କମିଲା, ଶ୍ରୀହଟ୍ଟ, ଚଟ୍ଟଗ୍ରାମ ଅଞ୍ଚଳରେ ବଙ୍ଗାଳୀଙ୍କ ଗୁରୁଗୋସେଇଁ ହୋଇ ରହିଛନ୍ତି ।

[ ୩ ]

ଚଇତନ୍ୟ ଦେବ ଗୋଦାବରୀ ନଈ କୂଳରେ ରାମାନନ୍ଦ ରାୟଙ୍କ ସଙ୍ଗେ ଦେଖା କରି ଓଡ଼ିଶା ବଡ଼ ଦେଉଳ ଆଡ଼କୁ

ବାହୁଡ଼ିଲେ । ଶ୍ରୀଚଇତନ୍ୟଙ୍କର ଜଗନ୍ନାଥ ଦରଶନ ହେଲା, ଓଡ଼ିଶାର ବଡ଼ଦାଣ୍ଡ, ବଡ଼ ଦେଉଳ, ବଡ଼ ଠାକୁର ଦରଶନ ହେଲା, କିନ୍ତୁ, ଦରଶନ ହେଲା ନାହିଁ ଓଡ଼ିଶାର ଠାକୁର ରଜା 'ଚଳନ୍ତି ବିଷ୍ଣୁ' ପ୍ରତାପରୁଦ୍ର ଦେବଙ୍କର ସାଙ୍ଗେ । ଚଇତନ୍ୟ ଦେବ ପ୍ରତାପରୁଦ୍ର ଦେବଙ୍କ ଦରଶନ ପାଇଁ ଚାହିଁ ରହିଲେ । ରାମାନନ୍ଦ ରାୟ ରାଜମହେନ୍ଦ୍ରୀ ଶାସନରେ ନ ଥାଇ ରଜା ପ୍ରତାପରୁଦ୍ର ଚଇତନ୍ୟ ଦେବଙ୍କୁ ଦରଶନ ନ ଦଅନ୍ତି । ରାମାନନ୍ଦ ରାୟଙ୍କ ନିକଟକୁ ଠାକୁର ରଜାଙ୍କ ଶ୍ରୀହସ୍ତ ଚିଠାଉ ଗଲା; ରାଜମହେନ୍ଦ୍ରୀ ଚିଠାଉ ପଇଠ ହେବା କ୍ଷଣି ଆଜ୍ଞା ଅନୁସାରେ ରାମାନନ୍ଦ ରାଜମହେନ୍ଦ୍ରୀଠୁଁ ଆସି ପୁରୀ ଧାମରେ ପହଞ୍ଚିଲେ । ରାମାନନ୍ଦ ଆସନ୍ତେ ତାଙ୍କର ସଲ ସନମତ ଘେନି ପ୍ରତାପରୁଦ୍ର ଚଇତନ୍ୟ ଦେବଙ୍କୁ ଦରଶନ ଦେଲେ ।

ସାଧୁ ସଙ୍ଗତେ ସାଧୁର ଭେଟ ହେଲା—ଭଗତ ସହିତେ ଭଗତର ମିଳନ ହେଲା । ଚଇତନ୍ୟ ଦେବ ଦେବତା ସମାନେ ପୂଜଅବନ୍ତ ବାହ୍ମଣ ହେଲେ ମଧ୍ୟ କ୍ଷତ୍ରିୟ ପ୍ରତାପରୁଦ୍ରଙ୍କୁ ଆଉ କରଣ ରାମାନନ୍ଦଙ୍କୁ ପ୍ରେମଭରେ ଦି'ବାହୁ ଟେକି କୋଳାଗ ପକେଇଲେ । ହରିଦାସ, ରଘୁନାଥ, ନିତ୍ୟାନନ୍ଦ ହେଲିକା ବଙ୍ଗାଳୀ ଭଗତେ ଆସି ସେଇଠି ଠୁଳ ହେଲେ । ଜଗନ୍ନାଥ, ବଳରାମ, ଅନନ୍ତ, ଅଚ୍ୟୁତ, ଯଶୋବନ୍ତ ଆଦି ଓଡ଼ିଆ ଭକତମାନେ ବି ଆସି ପୁରୁଷୋତ୍ତମ କ୍ଷେତ୍ରରେ ଜୁଣ୍ଡ ହେଲେ । ବଡ଼ ଦେଉଳ ବେଢ଼ାର ପାଟ ଅଗଣାରେ ହରିନାମ ସଙ୍କୀର୍ତ୍ତନର ରୋଳ ଉଠିଲା । ପୁରୀ ସହରପାକ, ବଡ଼ ଦାଣ୍ଡ, ବଡ଼ ଦେଉଳ ସବୁ ଥାନ ଘମାଘୋଟିଆ କୀର୍ତ୍ତନରେ କମ୍ପି ଉଠିଲା ।

[ ୪ ]

ସେ ଧନ ଭଗତ ଜଗନ୍ନାଥଙ୍କ ସଙ୍ଗେ ଚଇତନ ଦେବଙ୍କର ନାଆଁକୁ ମାତ୍ର ଦେଖା ହୋଇଥିଲା । ଶ୍ରୀକ୍ଷେତ୍ରରେ ସେ ଯେତେ ଅଧିକ ଦିନ କଟେଇଲେ ଜଗନ୍ନାଥ ଦାସଙ୍କ ନାଆଁ ଗାଆଁ ପଦ୍ମଭୂଷଣ ସେତେ ଅଧିକ ତାଙ୍କ କାନରେ ବାଜିଲା । ଜଗନ୍ନାଥ ଦାସଙ୍କ ସଙ୍ଗଭଜନ ଏବଟ ପାଇ ଚଇତନ୍ୟ ଦେବ ବାଉଳା ବତାଳ ହେଲେ । ଜଗନ୍ନାଥ ଦାସଙ୍କ ସଙ୍ଗ ନ ପାଇଲା ଯାଏଁ ତାଙ୍କ ମନ ଅସ୍ଥ ହେଲା ନାହିଁ—ଜଗନ୍ନାଥ ଦାସେ ବାହ୍ମଣ ଶାସନରେ ଏକ ଘରିଆ ହୋଇ ତାଙ୍କ ପତର କୁଡ଼ିଆଟିରେ ବସି ଓଡ଼ିଆ ଭାଷାରେ ଭାଗବତ ରଚୁଥିଲେ । ଧାଇଁଲେ ଚଇତନ୍ୟ ଦେବ ତାଙ୍କ କତିକି । ତାଙ୍କ ପଛେ ପଛେ ଗୋଡ଼େଇଲେ, ତାଙ୍କର ଭଗତ ଭକ୍ତମାନେ । ଓଡ଼ିଶା ରାଇଜର ରଜା ପ୍ରତାପରୁଦ୍ର, ରାଇଜର ମନ୍ତ୍ରୀ ରାମାନନ୍ଦ ଯାହାଙ୍କୁ ଦେଖି ବାଇ ହେଲେ ତାଙ୍କ ପଛରେ ନ ଗୋଡ଼େଇବ କିଏ ? ଯେ ଗୋଡ଼େଇଲା ସେ ବାଇ ହେଲା, ଯେ ନ ଗୋଡ଼େଇଲା ସେ ଅଥୟ ହେଲା, ଯେ ଦମ୍ଭ ଧରି ରହିଲା ସେ ଛଟପଟ ହୋଇ ମଲା, ଯେ ଦମ୍ଭ ଛାଡ଼ି ବାୟା ହୋଇ ଧାଇଁଲା, ଖୋଜିଲା ସେ ପାଇଲା ।

[ ୫ ]

ବାହାରେ ହରିବୋଲ କୁହାଟ ଶୁଣି ଜଗନ୍ନାଥ ଦାସେ ହାତକେ ତାଳପତର ଫେଞ୍ଜା ଆଉ ହାତକେ ଲେଖନ ଘେନ କୁଡ଼ିଆ ଭିତରୁ ବାହାରି ପଡ଼ିଲେ । ଚଇତନ୍ୟ ଦେବଙ୍କୁ ଦେଖି ତାଙ୍କ ହାତରୁ ଲେଖନ ତାଳପତର ଖସି ପଡ଼ିଲା । ସେ ହରି ପ୍ରେମରେ ମତୁଆଲା ହୋଇ ହଇହାତ ଟେକି ଗଉରାଙ୍ଗଙ୍କ

ପରି ନାଚିଲେ । ସବୁ ଭକତ ମିଳି ହରିନାମ ଗାଇ, ହାତ ଟେକି ଟେକି ନାଚିଲେ । ଖୋଳ କରତାଳ ସଙ୍ଗେ ହରିନାମର କି ଭାବ ଅଛି କେଜାଣି ଯେ ବାଜଣା ଯିମିତି ବାଜି ଗଲା ହରିନାମର ଢେଉ ଖେଳି ଗଲା—ହରି ନାମର ଗୋଟେ ଝରଣା ଉଚ୍ଛୁଳି ଉଠିଲା । ମାଇକିନା, ଅଣ୍ଡିରା, ପିଲା ପିଚିକା ଯେ ଯୋଉଠି ଥିଲେ ସଭିଏ ଆସି ସେଇ କୀର୍ତ୍ତନଆଦଳକୁ ବେଢ଼ିଗଲେ—ଲୋକେ ଯିମିତି ଘେରି ଗଲେ ସିମିତି ସଂକୀର୍ତ୍ତନ ଜମିଲା । ଗଉରାଙ୍ଗ ଗୋଟସେଇଁ ଡିଆ ସମ୍ଭାଳି ନ ପାରି ପ୍ରେମରେ ଭେଁ ଭେଁ କାନ୍ଦି ପକେଇ ଭୂଇଁରେ ଗଡ଼ଗଡ଼ା ଦେଲେ ।

ଭକତକୁ ଭକତ କୁଣ୍ଢେଇ ପକେଇଲେ । କୋଉ ଭଗତ କୋଉ ଭଗତର ଗୋଡ଼ ଧରି ପାଁପଡ଼ ଶୋଇଲା—କୋଉ ଭଗତ କୋଉ ଭଗତକୁ ପୋଟଳି ଧରିଚି, ଦିହିଙ୍କ ଆଖିରୁ ଝରଝର ଲୁହ ବହି ଯାଉଚି, ଇମିତି ହରିପ୍ରେମର ବଢ଼ି ଦେଶ ତମାମ ମାଡ଼ିଗଲା । ଏହି ପ୍ରେମ ସୁଅରେ ଭାସିଲେ ଶ୍ରୀଚଇତନ୍ୟ ଆଉ ଜଗନ୍ନାଥ ଦାସେ । ଜଗନ୍ନାଥ ଦାସଙ୍କୁ ନିଜଠାରୁ ବଡ଼ "ଅତି ବଡ଼" ମନେ କରି ଚଇତନ ଦେବ ତାଙ୍କୁ ଭାରି ମାଇନ କଲେ, ବଡ଼ ଭକତି କଲେ । ଗୌରାଙ୍ଗଙ୍କର ଏ ଭକତି ଦେଖି, ଜଗନ୍ନାଥ ଦାସଙ୍କୁ ଏତେ ମାଇନ କରିବାର ଦେଖି ତାଙ୍କ ବଙ୍ଗାଳୀ ଭକତମାନେ ବଡ଼ ଆଚମ୍ଭିତ ମଣିଲେ, କେହି କେହି ମନରେ ଅବଗୁଣ ବି ବହିଲେ ।

ସଂସ୍କୃତ ଭାଗବତକୁ ଓଡ଼ିଆ ପଦ କରିବାରୁ ଏ ଶାସ୍ତ୍ରସବୁ ଶୂଦ୍ର ଆଦି ଲୋକେ ଜାଣିଯିବେ, ଏଥିପାଇଁ ବାହ୍ମଣ ପଣ୍ଡିତମାନେ ଜଗନ୍ନାଥ ଦାସଙ୍କୁ ଏକ ଘରିଆ କରେଇ ରଖିଲେ । ତାଙ୍କ ନାଆଁ ଶୁଣିଲେ ବ୍ରାହ୍ମଣପାକ ଭୁଙ୍କା ଫଁଅଁ ଫଅଁ ହେଉ ଥାଆନ୍ତି । ତାଙ୍କ

ଭାଷା ଭାଗବତକୁ ବ୍ରାହ୍ମଣେ "ତେଲି ଭାଗବତ" ବୋଲି ପରିହାସ କଲେ ।

ହେଲେ କଅଣ ହେବ ଜଗନ୍ନାଥଙ୍କର ଏ ଭାଷା-ଭାଗବତକୁ ପଢ଼ିବାକୁ ବାର ପାଟକ ଜାତିଙ୍କ ବଡ଼ ଶରଧା ବଳିଲା । ହାଟୁଆ ବାଟୁଆ ଶୂଦ୍ର ଜାତିର ଲୋକେ ଘରେ ଘରେ ସେଇ ଭାଗବତକୁ ପୁରାଣ କରି ଗୁଣିଲେ । ଏହା ଦେଖି ଶାସନୀ ବ୍ରାହ୍ମଣଙ୍କ ଦନ୍ଦ ମାନିଲା ନାହିଁ, ସେମାନେ ବଡ଼ ରବେଇ ଖବେଇ ହେଲେ ।

"ହୃତେ ତରନ୍ତ, ମୂଢ଼େ ତରନ୍ତ, ମହି ମହିଆ ବୁଢ଼ ମରନ୍ତ ।" ମୂରୁଖର ଗଣ୍ଡି ହୃଢ଼ ପରି ଅପାଠୁଆ ଲୋକେ ସେହି ଫିଟା ପାଠ "ତେଲି ଭାଗବତ"କୁ ଏକା ଗଡ଼ି ମୁକୁତିର ପାଠ ମଣି ନିତି ସଞ୍ଜ ସକାଳେ ଗୁଣିଲେ । ଗାଁ ଗଣ୍ଡା ପୁରପଲ୍ଲୀ ଗୃହଆଡ଼େ ଜଗନ୍ନାଥ ଦାସଙ୍କ ଭାଗବତ ପଢ଼ା ଲାଗିଲା । ଆପଣା ଘରେ ବାପ ଗୋସେଇଁ ବାପଙ୍କ ଅମଳରୁ ଯେଉଁ ସବୁ ପୁରୁଣା ପୋଥି ସାଇତା ହୋଇ ଘଡ଼ିରେ ଉଷୁନ୍ତ ହୋଇଥିଲା, ତାକୁ ସବୁ କାଢ଼ି ସେହିଥିରୁ ସବୁ ଶିଳ୍ପ ଶାସ୍ତ୍ର କଥାମାନ ପଢ଼ି ତାକୁ ସବୁ ମନେ ମନେ ହେଜିଲା । ଆଉ ସେହି ପାଠକୁ ଊଣ୍ଡି ଊଣ୍ଡି ପଥର ଦଦରେ କେତେ କାମ ଫୁଟେଇଲା । ଯେ ଦେଖିଲା ସେ ଆଚମ୍ବିତ ହେଲା । ଏତେଡ଼ ବଳକେ ଟୋକାର ଏଡ଼େ ପାଗଳର ପଣ ! ଗଙ୍ଗାଠାରୁ ଗୋଦାବରୀ ଯାଏଁ ଘରେ ଘରେ ମନ୍ଦିରେ ମନ୍ଦିରେ ଗାଁଏ ଗାଁଏ ପୁରାଣ ପାଠ ଶେଷରେ ଶୁଣା ଗଲା—

'ଭଣଇ ଦାସ ଜଗନ୍ନାଥ ।'

ବଙ୍ଗଳା, ପଶ୍ଚିମା ଯେ ଶ୍ରୀକ୍ଷେତ୍ରକୁ ଜଗନ୍ନାଥ ଦରଶନ ପାଇଁ ଆସିଲେ ସେ ଏଇ ଭାଷା ଭାଗବତକୁ ଆଉ ବଡ଼ ଦେଉଳ

ଜଗମୋହନ ମେଲରେ ଦେଉଳ ବେଢ଼ା ଭିତରେ ବରଗଛ ମୂଳେ ନିତି ପାଠ ହଉଥିବା ବଳରାମ ଦାସଙ୍କ ଓଡ଼ିଆ ଦାଣ୍ଡୀ ରାମାୟଣକୁ ନିଜ ନିଜ ଭାଷାରେ ପୋଥିରେ ଲେଖେଇ ନେଲେ । ଇମିତି ଭାଷା ଭାଗବତ, ଭାଷା ରାମାୟଣ ଦେଶ ବିଦେଶରେ ପ୍ରକଟ ହେଲା— ଯେ ପଢ଼ିଲା ସେ ବୁଝିଲା, ଯେ ବୁଝିଲା ସେ ଧରମ ଆଚରଣ କଲା ।

[ ୭ ]

ଜଗନ୍ନାଥ ଦାସଙ୍କ ସଙ୍ଗେ ବଳରାମ ଦାସ, ଅନନ୍ତ ଦାସ, ଅଚ୍ୟୁତ ଦାସ ଆଉ ଯଶୋବନ୍ତ ଦାସ ଆସି ଚଇତନ୍ୟଙ୍କ ଦଳରେ ମିଶିଲେ । ଚଇତନ୍ୟ ଦେବ ରାଜାଙ୍କ ପାଇଁ ଯାହା ଦାନ ଅନୁଷ୍ଠା କରିଥିଲେ ତାହାଙ୍କୁ ସବୁ ଦାଇ ସେ ମନର ଆଶା ମେଣ୍ଟାଇଲେ । ଗଉଡ଼ିଆଙ୍କ ଦଳ ବଳ ଦିନକୁ ଦିନ ବଢ଼ିଲା । କେତେ ସ୍ତ୍ରୀ ପୁରୁଷ, କେତେ ବୁଢ଼ା ଭେଣ୍ଡିଆ, କେତେ ବାଉଁଅ, କେତେ ଭିଆଣ୍ଡ, କେତେ ରାଣ୍ଡୀ ଝିଣ୍ଡୀ ଆସି ଗଉର ନିତାଇ ଦଳରେ ଆଶ୍ରା ନେଲେ । ଧରମ-ବାୟା ହୋଇ ଦଳେ ଘର ଦୁଆର ଛାଡ଼ି, ପୁଅ ମାଇପ ଛାଡ଼ି ନାଚି, ଝଳ, ବନ, ତରବଟ ବୁଲିଲେ । ଗୁଳିଆଉ ଝାଞ୍ଜ, ମୃଦଙ୍ଗ, ଖୋଳ କରତାଳର ରବ ଶୁଭିଲା—ହରିବୋଲ ଡାକରେ ଆକାଶ ପୂରିଗଲା । ଚିତା ତିଳକ ଦେଇ, ହରିମନ୍ଦିର କାଟି, କଣ୍ଠରେ ତୁଳସୀମାଳ ଭିରି, କଉପୁନି ମାରି, ଚଇତନଚୁଟି ରଖି, ନରମାଇଲ ସେବା କରି ହରିଭଗତେ ଆପଣା ଆପଣାକୁ ଭାଗ୍ୟବନ୍ତ ମଣିଲେ ।

ଯେ ଯୋଉଠେ ସାଧୁ ସନ୍ୟାସୀ ଥିଲେ, ସଭିଏ ଆସି ଜମା ହେଲେ ଚଇତନ୍ୟ ଦେବଙ୍କର କଡ଼ରେ । ଧରମର ବାନା ଉଡ଼ିଲା ।

ଧରମ ଖବର ଲୋକଙ୍କୁ ଦେଲେ, ଧର୍ମ ଖବର ଲୋକେ ଲୁହାକୁ ଚୁମ୍ବକ ଟାଣିଲା ଭଳି ଟାଣି ହୋଇଗଲେ । କାଞ୍ଚି ନଦିଆ, କାଞ୍ଚି ଶ୍ରୀକ୍ଷେତ୍ର—ଓଡ଼ିଶାର ସାଧୁ ଭଗତଙ୍କ ନାଆଁ ଗାଁଆ ଶୁଣି ଚଇତନ୍ୟ ଦେବ ଓଡ଼ିଶାକୁ ଦଳ ବଳ ଘେନି ଧାଇଁ ଆଇଲେ—ଧାଇଁ ଆସି ଓଡ଼ିଶାର ସାଧୁ ଭଗତଙ୍କୁ ବାନ୍ଧି ନେଲେ ଓ ଗୁରୁଗଉରବ କଲେ ।

ଶ୍ରୀକ୍ଷେତ୍ର ସ୍ୱର୍ଗ ଦୁଆରଠେଇଁ ସାଧୁ, ସନ୍ୟାସୀ, ବଇଷ୍ଣବମାନଙ୍କର ଗୋଟେ ବଡ଼ ମେଳା ହେଲା । ଝାଞ୍ଜ ମୃଦଙ୍ଗ, ଖୋଳ କରତାଳ, ଶଙ୍ଖ, ଘଣ୍ଟା, କାହାଳୀ ବାଜି ଉଠିଲା । କୀର୍ତ୍ତନ ଖୁବ ଜମିଲା । ହରିବୋଲ ଡାକର ଗୋଟେ ଢେଉ ଯାଇ ସମୁଦ୍ର ଢେଉରେ ମିଶିଗଲା । ସାଧୁ ସାଧୁର ମିଳନରେ ବଡ଼ ଆନନ୍ଦ ଉପୁଜିଲା । ଖୋଳ କରତାଳର ତାଳେ ତାଳେ ନାଚି ନାଚି ଗଉରାଙ୍ଗ ଠାକୁର ଭଗତଙ୍କ ସଙ୍ଗେ ଯିମିତି ହରିନାମ ଗାଇଲେ ସିମିତି ସମୁଦ୍ର ଉଚ୍ଛୁଳି ସେ ସଂକୀର୍ତ୍ତନର ତାଳ ସଙ୍ଗେ ତାଳ ଲଗେଇଲା । ସବୁ ସାଧୁ ଭଗତଙ୍କୁ ସମୁଦ୍ର ପାଖରେ ଠୁଳ ହେବାର ଦେଖି ଚଇତନ୍ୟ ଦେବ ପ୍ରେମ ଭୋଳରେ ସେଇ ସାଗର ଭିତରେ ଝାସ ଦେଲେ । ଭଗତମାନେ ହରିବୋଲ ଦେଇ ସାଗରତୀର୍ଥରେ ତନୁ ମଳାଜି ମୋହିଲା ମୋହିଲା ହେଲେ । ସାଧୁଙ୍କ ମହିମା ଜସ କଏ ଜାଣେ ? ଚଇତନ ଦେବଙ୍କ ଏ ସବୁ ଅପୂରୁବ ଭିଆଣ ଦେଖି ଦେଖଣାହାରିଏ କୁହାକୁହି ହେଲେ—

"ସାଧୁର ମହିମା ସାଧୁ ଜାଣେ
ସାଧୁକୁ ସାଧୁ ଚହ୍ନେ ।"

# ମୁଁ ବାୟା ହେଲି

[ ୧ ]

ଲାଙ୍ଗୁଲା ନରସିଂହ ଦେବଙ୍କ ରାଜୁତିରେ ଅବମା କଂପୁଚ। କଳିଙ୍ଗ ରାଜନ, ଉତ୍କଳ ମଣ୍ଡଳମଣି ନରସିଂହ ଦେବଙ୍କ ନାଆଁ ଶୁଣିଲେ ଯୋଗଣ ବାଘ ବାଟ ଦଉଚ। ତାଙ୍କ ହାତୀ, ଘୋଡ଼ା, ପାଇକ, ମାହୁନ୍ତ, ଢଇନ, ସାଆନ୍ତ ଗଙ୍ଗାଠାରୁ ସିଂହାଚଳ ଡେଇଁ ଗୋଦାବରୀ ଯାଏଁ ମାଡ଼ ରହିଚନ୍ତି। ଆଜ ସବୁ ରାଇଜର ରଜା ମହାରଜାଯାକ ତାଙ୍କୁ ଦେଖି ଡରକର ପର ହାତ ଯୋଡ଼ ସେ ଆଜ୍ଞା କରୁଚନ୍ତି। ବଡ଼ଇ ବାପୁଡ଼ା କ ତାଙ୍କ କଥା ଅମାନ୍ୟ କରବେ। ତାଙ୍କ ଫରମାସକୁ ମେଣ୍ଟ ଦବ ଇମିତ ଗୁଣ୍ଡିଆ କାହାର ?

ପୁରୀ ଠାରୁ ବାଲି କୁଦରେ କୁଦରେ ପାଖ ପାଖ ବାରକୋଶ ଦୂରରେ କୋଣାରକ। ସେ କାଳରେ କୋଣାରକ ଗୋଟେ ବଡ଼ ସହର ଥିଲା। ସେଠାରେ ନଈ ମୁହାଣକୁ ଲାଗି ଗୋଟେ ବଡ଼ ବୋଇତ ହାଟ ଥିଲା। ସେଇଠୁ ଲଙ୍କା, ବାଲି, ଜାଭା, ସୁମାତ୍ରା ଆଦ ଟାପୁକୁ ଓ ବରମା ଦେଶକୁ ଆମର ଏ ଓଡ଼ିଆ ଦେଶର ସାଧବ ପୁଅମାନେ ବୋଇତ ବାହି ବେପାର ବଣିଜ କର ଯାଉଥିଲେ। ସାଧବ ଘର ପୁଏ ଆଜ ବାଲି ସାହୁଘର ପୁଏ ବୋଲଉଚନ୍ତି। କଳିଙ୍ଗ ପାଟଣାଠାରୁ ତମଲୁକ ଯାଏଁ ସାହୁ ସାନ୍ତ୍ରା ଘେନ ଅନେକ ଲୋକ ସମୁଦ୍ର କୂଳିଆ ଗାଁମାନଙ୍କରେ ସେଇ କାଳରୁ ବସତ କର ରହିଚନ୍ତି।

ସେଇ କାଳରେ ପୁରୀ ସହରଠୁଁ କୋଣାରକ ଯିବା ପାଇଁ ବାଲି ପନ୍ଥାର ନଥିଲା। ସମୁଦ୍ରରୁ ଜୁଆର ଆସି ଏବେ ବାଲି

ମାଡ଼ି ଯାଇଚି । ସେ ବାଲି ଭୂଇଁରେ ଅନେକ କଲା ହରିଣ ପଲ ପଲ ହୋଇ ଡେଇଁଚନ୍ତି । ମାଘ ଶୁକ୍ଳ ସପତମୀ ଦିନ କୋଣାରକରେ ଯୋଉ ବୁଡ଼ ପଡ଼େ ସେଇ ବୁଡ଼ ପାରିବାକୁ ଗଲେ ଦେଖିବ ସେ ବାଲି ଅପନ୍ତରର କି ଶୋଭା ! ଦେଖିବ ସେ କୋଣାରକ ।

ମହାରଜା ନରସିଂହ ଦେବଙ୍କ ଆଜ୍ଞା ହୋଇଚି, ଅନ୍ତ ଚଞ୍ଚଳ ଅତି ତୁରନ୍ତ କୋଣାରକରେ ଗୋଟାଏ ବଡ଼ ନାହିଁ ନଥିଲା ଦେଉଳ ତୋଳା ସରିବ । ବଛା ବଛା ବାରଶହ ବଢ଼େଇ ଜମା ହୋଇଚନ୍ତି । ଦେଉଳ ତୋଳା ଲାଗିଚି—ଲଗା ଲଗି ଷୋହଳ ବରଷ ବିତି ଗଲାଣି, ତେବେବି ଦେଉଳର ମୁଣ୍ଡି ମରା ହୋଇ ପାରିଲା ନାହିଁ । ଦେଉଳ ମୁଦା ହୋଇ ପାରି ନାହିଁ ବୋଲି ବାରଶହ ବାଢ଼େଇଙ୍କର ଦିନ ରାତି ଭାବେଣି ପଡ଼ିଚି ।

ରଜାପରି ରଜା ନୁହନ୍ତି, ଏଡ଼ା ରଜା ଲଙ୍ଗୁଳା ନରସିଂହ ଦେବ । କାମରେ ଟିକିଏ ଅଟକଣା ହେଲେ, ଖୁଦେ ଖଣ୍ଡା କଲେ ଏକା ଥରକେ ମୁଣ୍ଡ କାଟ । ରଜାଙ୍କ ହୁକୁମ, ରାତି ପାହିଲା ବେଳକୁ ଦେଉଳ ଶିଖରେ ପାଟ ପଥର ପଡ଼ିଥିବ, ମୁଣ୍ଡି ମରା ହୋଇଥିବ, ଦେଉଳ ମୁଦା ସରିଥିବ, ନଇଲେ କୁଆ କାଆ କଲା ବେଳକୁ ବାରଶହ ବଢ଼େଇଙ୍କର ମୁଣ୍ଡ କାଟ ହେବ । ବଢ଼େଇମାନେ କପାଳ ମୁଣ୍ଡରେ ହାତ ଦେଇ ଚିନ୍ତା କରୁଚନ୍ତି । ରାତି ପାହିଲେ କରିବେ କଣ, ପଡ଼ିଚି ତାଙ୍କର ସବୁ ଏଇ ଭାବେଣି । ସମସ୍ତଙ୍କ ମୁଣ୍ଡରେ ଡିଲୁଳିଆ ବଜ୍ର କାମୁଡ଼ୁଚି । କାଲି ସକାଳୁ ତ ରଜାଙ୍କଠୁ ବଢ଼େଇ ବଂଶ ନିର୍ମୂଳ ହେବେ, କରନ୍ତି କଅଣ ?

[ ୨ ]

ମହାରଜା ଗଦା ଗଦା ଟଙ୍କା ଟୋକର ଖରଚ କରି ପାହାଡ଼ ପାହାଡ଼ ସାଗ ମୁଗୁନି ପଥର ଅଣାଇଚନ୍ତି—ନୀଳଗିରି ମୁଲକରୁ ଦୂର ପରବତମାନଙ୍କରୁ ପଥର କଟେଇ ବଡ଼ ବଡ଼ ଡୋଙ୍ଗାରେ ଲଦେଇ ନଈରେ ନଈରେ ପ୍ରାଚୀ ନଈକୁ ବାହି ଆଣି କୋଣାରକ ଘାଟରେ ପହଞ୍ଚାଇଚନ୍ତି—ହଜାର ହଜାର ମୂଲିଆ, ମଜୁରିଆ, ବେଠିଆ, ଖଟିଆ, ହଳିଆ ଦିନ ରାତି ପଥର କଟା, ପଥର ବୁହା, ପଥର ଲଦା, ପଥର ଖଣ୍ଡାରେ ଲାଗିଚନ୍ତି । ନଈର ଗମ୍ଭୀର ଗର୍ଜନ ଯୋଡେଇ ମନ୍ଦର ତୋଳା ହେଉଚି । କୋଣାରକ ଦେଉଳ କାମ ପାଇଁ ରଜାଙ୍କ ଭଣ୍ଡାରର ଭୁଷ୍ଟ ହେଲାଣି । ଓଡ଼ିଶା ରାଇଜର ଷୋଳ ବରଷର କର, ରଜାଙ୍କର ଷୋଳ ବରଷର ସାଇତା ସଂପତ୍ତି ଏଇ କୋଣାରକରେ ଲାଗି ସଇଲାଣି । ଏତେ ଖରଚ ହେଲାଣି, ତେବେବି ଦେଉଳ ତୋଳା ଶେଷ ହେଉନାହିଁ । [illegible] ଘବଲ ବେଳକୁ ରଜା ଯାହାଙ୍କ ଉପରେ ଏ ଦେଉଳ ତୋଳା ଭାର ଦେଇଚନ୍ତି ସେହି ଶିବେଇ ସାନ୍ତରାଙ୍କ ତାଳୁବାଟେ ବହ୍ମ ଗୁଳ ଯାଉଚି ।

ବାରଶହ ବଢ଼େଇ ଲାଗି ପଡ଼ି ମୂର୍ତ୍ତି ଖୋଳ ଭୁଣ୍ଡରେ ମାରି ନାହାଣରେ ଖୁଣ୍ଟି ଖୁଣ୍ଟି ପଥର ଦେହରେ ଅତି ସୁନ୍ଦର ସରୁ ନଖୁଣ କାମମାନ ଗଢ଼ିଚନ୍ତି—କେତେ ଡାଳ ଫୁଟେଇଚନ୍ତି—କେତେ ହାତୀ, ଘୋଡ଼ା, ପାଲିଙ୍କି, ସବାରି, ଅଣ୍ଡିରା ପୁଅ, ମାଇକିନିଆ ଝିଅ, ବୁଢ଼ା, ବୁଢ଼ୀ, ଦଣ୍ଡା, ଭେଣ୍ଡା, ଡୋଳି, ବାଜୁଅ, ଭୂଆସୁଣୀ, ନାଟୁଆ, ନାଟୁଣୀ, ସଇନ, ସାମନ୍ତ, ରଜା, ପାଇକ, ପାତର, ମନ୍ତ୍ରୀ, ସାଧବ, ଜଗୁଆଳ, ଛତି, ଚପରା, ସଖୀ, ପଟୁଆର ସବୁ

ଅଚଳ ଚଳ ଚନ୍ଦ୍ରଭାଗ ତେଜଲ ଜ୍ୟୋତିର ପଥର ଦାଢରେ ସୁନ୍ଦର କଳା କାମହଉଚନ୍ତି—ପଥର ଉପରେ ସରୁ ନିହଣରେ ଅନନ୍ତ ଗାଢ଼ ଫୁଟାଉଛନ୍ତି । ଏତେ ଶ୍ରମ ଏତେ ସରୁ କାରୁ କାମ ସଫଳ ଯିବ । ଘର ଛାଡ଼, ଦୁଆର ଛାଡ଼, ପୁଅ ମାଇପ ଛାଡ଼ ଏଠି ଆସି କେତେ ବରଷ ହେଲା କେତେ କଟି ହାତରୁ ମାଟିମ ଝଡ଼ିଗଲେଣି, କ ହୋଇଗଲା ! ଆଜିକା ବେଢ଼ା ଉପରେ କୋରଡ଼ାମାଡ଼ ହେବ; ବାଡ଼ଇଙ୍କର ମୁଣ୍ଡ କାଟ ହେବ । ଏଇ ଭାବନାରେ ବଢ଼େଇଙ୍କର ମନ ଆଜ ଅସ୍ଥିର ଧରୁ ନାହିଁ ।

[ ୩ ]

ବିଶୁ ମହାରଣା ରଜାଙ୍କ ଡାକଗ୍ରେ କୋଣାରକ ତୋଳିବା ପାଇଁ ଗଲାବେଳେ ତା ଭାରିଯାର ମାସ ଗଡ଼ିଥିଲା । ବିଶୁ କୋଣାରକ ଯିବାର ଷୋଳ ବରଷ ପୂରିଲାଣି । ବିଶୁର ଗୋଟିଏ ପୁଅ ହୋଇଛି । ପୁଅକୁ ତା ମାଆ ବଡ଼ ଶରଧାରେ ନାଆଁ ଦେଇଛି 'ଧରମା' । ବାପ ଧରମ କାମରେ ଯାଇଚନ୍ତି—ବାପ ଗଲାବେଳେ ପୁଅ ପେଟରେ—ସେଇଥି ପାଇଁ ତା ମାଆ ତା ନାଆଁ ରଖିଚି 'ଧରମା' ।

ଧରମାକୁ ଏବେ ପନ୍ଦର ପୂରି ଷୋଳ ଚଳିଚି । ପନ୍ଦର ବରିଷିଆ ଟୋକାଟା ହେଲେ କଣ ହେଲା କ ଧରମାର ଏକା ଭାରି ବୁଦ୍ଧି । ଚାଟଶାଳୀରେ ସେ ହେଇଚି ବଡ଼ଚାଟ । ତା ଶିଖ ଦେଖି ନ ପାରି ତା ଉପରେ ଅହଙ୍କା କରି ବନେ ଚାଟଶାଳିଆ ପିଲେ ତାକୁ ଅଣବାପୁଆ ବୋଲି ନାଆଁ ବସେଇଲେ । ଏ କଥାଟା ଧରମାକୁ ବଡ଼ ବାଧିଲା—ସେ ଆଉ ଚାଟଶାଳୀର ଏରୁଣ୍ଡି ମାଡ଼ିଲା

ନାହିଁ—ଘରେ ବସି ନନ୍ଦଣ ମୁଗୁର ତେନ ପଥର ଖଣ୍ଡିଲା, କାଠ ବନ୍ଧିଲା । ଆଜ ଗୃହଶାଳୀକ ନ ପାଇ ଅପଣା କୂଳ କେଉଁପାରେ ମନ ବଳେଇବାର ଦେଖି ମାଆଁ କେତେ ଆଉ କେତେ କଥା ବଗୃଣ ଘର କାମ ସାର ଆସି ପୁଅ କଟରେ ବସିଲା । ମାଆକୁ କଡରେ ବସିବାର ଦେଖି ଧରମା ପଚାରିଲା—"ମାଆଁ ! ମାଆଁ ! ମୋ ରଣ, ମତେ କହିବୁ ନୁ ମୋ ବାପ କୋଉଠି ଅଛି ! ମତେ ଗୃହଶାଳଆ ପିଲେ ଅଣବାବୁଆ ବୋଲ ଡାକୁଚନ୍ତି ମାଆଁ ! ମତେ କହ ମୋ ବାପ କୋଠି ଅଛି, ମୁଁ ସେଇଠିକ ମୁକର ଯିବ ।"

ଏକଥା ଶୁଣି ମାଆଁ ର ଦ ଆଖିରୁ ଦ ଧାର ଲୁହ ଗଡଗଲା । ପୁଅ ନନ୍ଦଣ କାଣଣି ଥୋଇ ଦେଇ ବୁଲୁ ବୁଲ୍ କର ମାଆଁ ମୁହଁକୁ ଅନାଇ ରହିଚ । ମାଆଁ ର ୯୦ ବର୍ଷ କମି ଉଠିଲା । ମାଆଁ କହିଲା—"ବାପ ! ମୋର ଏ ହାତକାଚ ବଜ ହେଉଚ— ମାହାପ୍ରଭୁ ତୋ ବାପକୁ ଶଙ୍ଖ ଚକ୍ର ଆଡ଼ ଆଳ କର ରଖିଚନ୍ତି—ମୁଁ ତୋ ବାପ ଆଜକ ଷୋଳ ବରଷ ହେଲା ଯାଇ କୋଣାରକ ଦେଉଳ ତୋଳାରେ ଲାଗିଚନ୍ତି—ସେ ସୁଖରେ ଅଛନ୍ତି—ସେ ଯିବାବେଳେ ତୁ ଥିଲୁ ପେଟରେ । ତୁ ତ ବାଳୁତ, ଏ ବଇସରେ ଏତେ ବାଟ ଗୃଲ ଗୃଲ କମିତ ଯିବୁରେ ବାପ ?"

[ ୪ ]

ତା' ବାପ ଅଛି, ସେ ଅଣବାବୁଆ ନୁହେଁ, ଏଇତକ ତା' ମାଆଁ ଭୁଣ୍ଡରୁ ଶୁଣିଲା କ୍ଷଣି ଧରମା ଆଖି ଛଳ ଛଳ କଣ ଆନନ୍ଦରେ ଉଠିଲା । ତାର ଦରଦସ ମୁହଁ ଦେଖି, ତାର ମନଦରଷ ଦେଖି ତା ମାଆଁ ର ସେତେବେଳେ ମନ ଆନନ୍ଦ ସେତିକବେଳେ

ସନ୍ଧ୍ୟୁ ଉଣ୍ଡି ଧରମା ହଠି ବସିଲା ତା' ବାପ କଟକ ଯିବ ବୋଲି । ମାଆଁ କେତେ ମନା କଲେ ମାନିଲା ନାହିଁ—ଅବୁଝା ଧରମା ଏକା ଅଜଟ ଧରିଲା—ବାପା ପାଖକୁ ଯିବାକୁ ଅଳି କଲା—ଏକା ଗ' ଧରିଲା ଯିବ ବୋଲି ।

ମାଆଁର ସେଇ ଗୋଟିକ ବୋଲି ପୁଅ—ସେଇ ଏକଇରବଳା, ଅନ୍ଧରଲଣ୍ଡଣ କୁଳୁମଣପେଟିଆ ଧନ । ତାକୁ ଛାଡ଼ି ତା ମାଆଁ କମିତି ଦହ ଧରି ରହିବ ? ତାର ପଗ ପୁଅକୁ କୋଳ ଛାତିରେ କୋଣାରକ ପଠେଇ ଦେବ—ମାଆଁର ଦହ କମିତି ସହିବ ? ହେଲେ ଧରମା କି ଛାଡ଼ିବା ପିଲା ଯେ, ଉଣ୍ଡିଲେ ଭୁନ ହେଇ ରହିବ !

ମାଆଁ ଶେଷରେ ମଙ୍ଗିଲା । ଧରମାର ଗାମୁଛା କାନରେ ଚୁଡ଼ା ମୁଢ଼ି ସାକର କରି ଗଣ୍ଠୁଳିଟିଏ ବାନ୍ଧି ଦେଇ, ତାକୁ ତିଆରି ପକଇ ଦେଇ ତା' ଦି' ଗାଲରେ ଦିଇଟା ଚୁମା ଦେଇ, ମାଆଁ ତାରି ତା' ହାତକୁ ଆପଣା ବାଗର ବରକୋଳି ବୁଜୁଳାଟିଏ ଆଉ ନହଣଟିଏ ବଢ଼େଇ ଦେଇ କହିଲା—"ବାପ ! ଏଇ କୋଳି ଗଣ୍ଡାକ ଆଉ ଏ ନହଣଟି ବଡ଼ ଜାଗତିଆରରେ ନବୁ—ସ୍ବାକୁ ଦେଖିଲେ ତୋ' ବାପ ତତେ ଚିହ୍ନିବେ ଯେ ।

ତହୁଁ ସଜବାଜ ହେଇ କୋଳିଗଣ୍ଡିକ ଆଉ ନହଣଟି ଘେନି ଧରମା ଏକୁଟିଆ ବାଟୋଇଙ୍କି ବାଟ ପଚ୍ଛରି ପଚ୍ଛରି କୋଣାରକ ଆଡ଼କୁ ଚାଲିଲା । ବାଟରେ ତା ମନରେ କେତେ ଭାବର ଢେଉ ଖେଳିଗଲା । ପୁଣି ସ୍ୱରଗ ଦୁଆରଠେ ଲହଡ଼ା ଭାଙ୍ଗିଲାବେଳେ ଯିମିତି ଲହଡ଼ା ଉପରେ ଲହଡ଼ା ମାଡ଼ି ଆସେ ତା'ମନରେ ସିମିତି କେତେ ଚିନ୍ତା ଲହଡ଼ା ବହିଗଲା ।

ତେଣେ କୋଣାରକରେ ବାରଶହ ବଢେଇଙ୍କର ଭାବନା ପଡ଼ିଛି । ମୁଣ୍ଡ କାଟିବ ସମସ୍ତ ପାଖକୁ ଆସୁଛି । କାଳାପାହାଡ଼ ବଢାଣୀଙ୍କର ଚୂଳ ଲାଗି ନାହିଁ—ସେ ଯୋଉଠି ମୂଡ଼ ଦଳେ ଲେଖେଁ ଧ୍ୟେବେଇ ଉପରକୁ ଗୃହିଁ ବସିଚନ୍ତି । ବାନ ଧନ ଉଡ ହେଉଛି । ଏତିକିବେଳେ ବଶୁ ମହାରଣା ବସାରୁ ଉଠି ଦୁଆର ମୁହଁକୁ ଆସି ଦେଖେ ତ ଦୁଆରରେ ଉତ୍ତମ ସୁନ୍ଦର ଭେଣ୍ଡା ପିଲାଟିଏ ଠିଆ । ପିଲାକୁ ଦେଖି ବଶୀ ମହାରଣା ବାହ ଶିହରିଉଠିଲା ଉଠିଲା ।

ବଶୁ ପଚାରିଲା, "ତୁ କିଏରେ ବାପ ?"

ଧରମା କହିଲା, "ମୋ ନାଆଁ ଧରମା । ମୁଁ ମୋ ବାପାଙ୍କୁ ଖୋଜିବାକୁ ଆମ ଗାଁଆରୁ ବାଟ ଚାଲି ଚାଲି ଆସୁଛି, ତୁମେ କିଏ ?"

ବଶୁ କହିଲା, "ମୋ ନାଆଁ ବଶୁ ମହାରଣା ।"

ଧରମା ପୁଣି ପଚାରିଲା, "ତମର କୋଉ ଗାଁ ?"

ବଶୁ ଜବାବ ଦେଲା, "ଆମ ଗାଁଆ ! ଆମ ଗାଁଆ କଥା କାହିଁକି ପଚାରୁଚୁ ବାପ ? ସେ କଥା ଆଜି ପଚାର ନାଁ । ଏ ଛାତି ଫାଟିଯାଉଛି, ସେ ଗାଁଆ କଥା ମନେ ପଡ଼ିଲେ । ଏ ଘାଟିରୁ ବଞ୍ଚିବୁ ଯେ ପୁଣି ସେ ଗାଁଆ ଦେଖିବୁ ।"

ଧରମା ଧରୁଛେଇ ପଚାରିଲା—"ହେଲେ ତମର ଗାଁଆ ନାଆଁ କହିଲେ କସ ହେବ ?"

ବଶୁ କହିଲା—"ଆଚ୍ଛା, ଆମ ଗାଁଆ ହଉଚି ଭଣ୍ଡୁରପୁର । ସ ଗାଁଆ ନାଆଁରୁ ତୁ କ ଖାଇବୁ ବାପ ? କାଲି ସିନ୍ଦୁର ଫାଟିଲା

ବେଳକୁ ତ ବାରଶ ବଢ଼େଇର ମୁଣ୍ଡ କାଟ ହେବ । ସେଥିରୁ ଯେବେ ଉଧାର ପାରିବୁ, ତେବେ ଗାଁଆ ନାଆଁ ପତ୍ତର । ନଇଲେ ବାପ ! ତୋ ଦୁଃଖରେ ତୁ ଯାଆ ।"

ଧରମା ପଢ଼ିଲେ, କଥାଟା ବୁଝି ପାରିଲା ନାହିଁ—ମାତ୍ର ତା ବାପକୁ ସେ ଠଉରେଇ ନେବାକୁ ଆଉ ବାକି ରହିଲା ନାହିଁ । ସାହସ ବାନ୍ଧି ସେ କୋଳ ବୁକୁଳିଟା ଆଉ ନହଣାଟା ବିଶୁ ହାତକୁ ବଢ଼େଇ ଦେଇ କହିଲା—"ଏ କୋଳ କାହା ବାରିର ଆଉ ଏ ନହଣଟା କାହାର ଦେଖିଲ ?

[ ୬ ]

ପାଖ ପୁଖା ଗାଁମାନଙ୍କରୁ ଲୋକେ କୋଣାରକ ଗଲେ ବଢ଼େଇଙ୍କୁ ଖବର ମିଳିଥାଏ ଯେ, ବିଶୁ ମହାରଣାର ଗୋଟିଏ ପୁଅ ହୋଇଛି—ପୁଅକୁ ତା ମାଆଁ ନାଁ ଦେଇଛି ଧରମା । ପୁଅର ନାଆଁ ଟା ଶୁଣି ଥିଲେ ଅନେକ ଦିନ ତଳେ, କେବେ ଏ କାମର ଭିଡ଼ରେ ବିଶୁ ପୁଅର ନାଆଁ ଟି ପାସୋରି ଦେଇଛି । ଗାଁଆରେ ତା କୁଡ଼ିଆଟିରେ ତା ତିରିଲା କୋଳରେ ପୁଅଟିଏ ବଢ଼ୁଛି, କୋଣାରକରେ ଦେଉଳ ତୋଳା ସରିଲେ ସେ ଘରକୁ ବାହୁଡ଼ି ତାକୁ ଦେଖିବ, କାଖେଇବ, ବିଶୁ କେବଳ ଏ ସୁଖର ସପନ ଦେଖୁଥାଏ ।

ଏବେ ଆଗରେ ପିଲାଟି ହାତରେ ତା ବାରି ବରକୋଳ ଆଉ ତାର ନିଜର ନାଆଁ ଖୁଣ୍ଟା ହୋଇଥିବା ନହଣଟି ଦେଖି ବିଶୁର ସପନଟା ସତ ପାଲଟିଲା ପରି ତାକୁ ଲାଗିଲା । କୋଳ ଆଉ ନହଣକୁ ବିଶୁ ଆଉ ଥରେ ନିରେଖି ପରଖି ଦେଖିଲା—ଦେଖି

ପଚ୍ଚାରିଲ, "ବାପ ! ତୁ କଅଣ କହୁଲୁ, ତୋ' ନାଆଁ ଧରମା ! ଘର ବଣୁନପୁର ?

ଧରମା କହିଲା—ହଁ । "ତୁହି କ ରେ ମୋର ବାପର ଧନ, ମୋ ଗଣ୍ଠିର ସୁନା ଧରମା ? ଆହା ମୋ ଆଖି ଫୁଟି ଯାଉ ଥାଇରେ ଗଣ୍ଠିଧନ ମୋର—ମୋ ରଙ୍କର ଫଖାଳ !" ବୋଲି ବାହୁନି ବଣୁ ମହାରଣା ଧରମାକୁ କୁଣ୍ଢେଇ କାନ୍ଦେଇ ପକେଇଲା । ବାପ ପୁଅ ଚାହାଁ ଚାହିଁ ହେଇଗଲେ । ମାଆଁ ର ସଙ୍ଗୁଳା ପଚର କଥା କହିବାରୁ ବାପର ଆଖିରୁ ଲୁହ ଦ ଧାର ବହିଗଲା ।

ଆଜ ବେଶି ଦୁଖ ସୁଖ କଥା ବାଉଚା ହେବାର ତ ଏ ସମୟ ନୁହେ । ରାତି ପାହିଲେ ବାରଶହ ବଢ଼େଇଙ୍କର ମୁଣ୍ଡକାଟ ହେବ । ସେଥିରୁ ବରଞ୍ଚିଲେ ସବୁ କଥା ଭାଷା ପିନା ।

ନ ଖାଇ ନ ପିଇ ସବୁ ବଢ଼େଇଯାକ ମନେ ମନେ ଜୀବନ ମୂଲ୍ଛୁ ମୁଣ୍ଡ ନଇଁକୁଣି ଚେଇଁ ଶୋଇଚନ୍ତି—କଏ କଏ ଅବା ଯାହା ହେବାର ହେଉ ବୋଲି କଡ଼ ପକେଇ ଗାତ୍ର ନଦରେ ଘୁଙ୍ଗୁଡ଼ି ମାରୁଚନ୍ତି । ରାତି ପାହିଲା ବେଳକୁ ଦେଉଳର ମୁଣ୍ଡି ମରା ନ ହୋଇଥିଲେ ବାରଶହ ବଢ଼େଇଙ୍କର ମୁଣ୍ଡ କାଟ ହେବ, ସମସ୍ତଙ୍କର ଶୁଳିଆ ପଡାରେ ଭେଟ ହେବ—ଏଇତକ ଠୁକରେ ବାପ ପୁଅକୁ କହିଲା । ପୁଅ ଏବେ ବାପର କଥା ସମଝିଲା ।

ବଣୁ ମହାରଣା ଚନ୍ତାରେ ମୁଣ୍ଡ ପୋତି ବସିଚ ଧରମା ନହଣ ବାଟେଣି ଅନ୍ଧାରେ ଖୁଣ୍ଟ ଧରେ ଦେଉଳ ଉପରକୁ ଚଢିଗଲା— ଦେଉଳ ଶିଖରେ ବସି ଦଣ୍ଡେ କଟକଣା କଲା, ଅନଗା କଲା, ଏକଡ଼ ସେକଡ଼ ଉଣ୍ଡିଲା, ପୁଣି ଦଣ୍ଡେ ବସି ବିଚାର କଲା—

ତା ପରେ ସୁତା ଟାଣି ଦେଉଳ ଚୂଡ଼ାର ମଝାଲ ଜାଣି ସେଇଠି ଚୁମ୍ବକ ପଥର ରଖି ସୁତପଟୁ ଅଙ୍କେଇଚ ଖଞ୍ଜି ମୁଣ୍ଡି ମାରଦେଲା । ତା ଉପରେ ବଡ ସୁତୁରରେ ପାଟ ପଥରକୁ ସାବଳରେ ଝସେଇ ଦେଲାରୁ ପାଟ ପଥର ଖାବଳରେ ବସିଗଲା । ଦେଉଳ ମୁଦ ହୋଇଗଲା । ଦେଉଳକୁ ମୁଦ ଦେଇ ତଳକୁ ଓହ୍ଲେଇ ଆସି ବାପକୁ କହିଲା, ବାପ ! ବାପ ! କିଛି ଚିନ୍ତା ନାହିଁ, ଦେଉଳ ତ ମୁଦା ହେଇଚ, ମୁଣ୍ଡି ମରୁ ସରିଚ—ବାରଶହ ବଢ଼େଇଙ୍କ ମୁଣ୍ଡ କଅାଁ ଯିବ ?

[ ୭ ]

ବିଶୁ ମହାରଣା ଦେଉଳ ଚଢ଼ି ଦେଖିଲା, ସତକୁ ସତ ଦେଉଳ ମୁଦା ହେଇଚ, ମୁଣ୍ଡି ମରୁ ସରିଚ—ତଳକୁ ଫେରି ଆସି ବାରଶହ ବଢେଇଙ୍କି ତାର ମନର ଆନନ୍ଦ ଜଣେଇ ଦେଲା ।

ଛୁଆ ଟୋକାଟା, ଗାଲୁ ଚିପିଲେ ଦୁଧ ବାହାରିବ ତାର ଏତେ ବୁଦ୍ଧି ଯେ, ଏକଷଣି ଆସି ମନ୍ତର କଲାପରି ଦେଉଳର ମୁଣ୍ଡି ମାର ଦେଲା । ପୁରୁଖା ପୁରୁଖା ବାରଶହ ବଢ଼େଇ ଏଥି ସୁତରତକ ଜାଣି ପାରିଲେ ନାହିଁ, ବଢ଼େଇମାନଙ୍କୁ ଏ ହାଇଫୁଟି ଛୁଇଁଲା । ସଭିଏ ମନେ କଲେ, ବିଶୁପୁଅ ଧରମା ବାରଶହ ବଢ଼େଇର ନାକ ନଣ ତଳେ ପକେଇ ଦେଲା । ସବୁ ବଢ଼େଇଯାକ ରୁଣ୍ଡ ହେଇ ବିଶୁକୁ ଡାକି କହିଲେ—"ତୋର ବାରଶହ ବଢ଼େଇରେ ଡାଇ ନା ଏକା ପୁଅରେ ଡାଇ ?"

ଧରମା ଯଦି କୋଣାରକ ଦେଉଳର ମୁଣ୍ଡି ମାରିଲା, ବାରଶହ ବଢ଼େଇ ନାକ ନଣ ରଖିବେ କୋଉଠି ?—ମୁହଁ ଦେଖେଇବେ କାହାକୁ ?

ବଡ଼ ବ୍ରକୈଣି ପଡ଼ିଲା । ବାରଶହ ବଢ଼େଇଙ୍କ ଭାରେଣି, ଅପଟଣ୍ଡ ବାଳୁତ ଧରମା ଯାହା କଲା, ବାରଶହ ବଢ଼େଇ ତାହା କରି ପାରିଲେ ନା । ବୃତ୍ତ ପାନ୍ଥବ, ମହାରାଜା ଥରେ ଦେଖବେ, ବେଭାଗ୍ୟ ଜଣାଇବ, ବାରଶହ ବଢ଼େଇ ଯାହା କରି ପାରିଲେ ନା ଏତେ ଦିନ ଲଗି, ଏକା ଧରମା ଚୋକାଠ ତାହା ନିମିଷକେ କରିଦେଲା ।

ରଜା ବୁଝିଲେ ବୁଝିଚନ୍ତି, ନ ବୁଝିଲେ ନାହିଁ । ଧରମା ଏକା ଏକା ଦେଉଳର ମୁଣ୍ଡି ମାଇଲା, ବାରଶହ ବଢ଼େଇ ବୁଲୁ ବୁଲୁ ଅନେଇଁ ରହିଥିଲେ । ରଜା ଯଦି ଓଲଟ ବୁଝନ୍ତି । ବୁଝାମଣା ଓଲଟ ହୋଇ ଯିବ । ହୋଇ ଯିବ କଣ କ, ଏକା ଧରମାର ମୁଣ୍ଡ ରହିବ, ବାକି ବାରଶହ ବଢ଼େଇର ମୁଣ୍ଡ କାଟ ହେବ ।

ରଜା ତ ରଜା ଲଙ୍ଗୁଳା ନରସିଂହ ଦେବ ପରି ରଜା । ତାଙ୍କ କଥା ଅନୁସାରେ ଚଳିଲ ତ ଚଳିଲ, ନଇଲେ ସିଏ ଆଖି ବୁଜା ଖଣ୍ଡା ବୁଲେଇ ଦେବ । ତା ମୁହଁରେ ପଶିବାର ଲୋକ କାଏ ଓଡ଼ିଶାରେ ? ଚଳଗଲେ ରଜାର ଗୋଟାଏ ଲଙ୍ଗୁଡ଼ ବାହାରି ପଡ଼େ । ହନୁମାନ ପରି ଲଙ୍ଗୁଡରେ ଠିଆ ହୁଏ ରଜା, ଯେତେ-ବେଳେ ସିଏ ରାଗିଯାଏ ।

ବାରଶହ ବଢ଼େଇଙ୍କ ବାରବରଷ କାଳ ବାଲି ଅପନ୍ତରରେ ଖଟେଇ, ଶହ ଶହ ଯୋଜନ ଦୂରରୁ ଅକଳନା ମୁଗୁନି ପଥର ବୋଇତରେ କଢ଼େଇ ସେ ଯୋ ବାର କୋଟି କ ଷୋଳ କୋଟି ଟଙ୍କା ନଇ ଗଣ୍ଡର ପାଣିକି ଫିଙ୍ଗିଲା, ତାକୁ ମନା କରିବାକୁ ସେ କାଳରେ କାହାର ଜିଭରେ ହାଡ଼ ଥିଲା ?

ଏମନ୍ତ କେତେ ଦିନ ଗଲେଣି ପରେ ବାରଶହ ବଢ଼େଇ ବିଶୁ ମହାରଣା ଆଗରେ କଥା ବାଢ଼ିଲେ ଯେ, ରାତି ପାହୁ ପାହୁ ଏକେତ ବାରଶହ ବଢ଼େଇଙ୍କ ଏଇ ଫସାର ଚୁଡ଼ ଦେବାକୁ ହେବ, ନଚେତ୍ ଧରମାକୁ ଜୀବନ ତ୍ୟାଗ କରିବାକୁ ପଡ଼ିବ । ବିଶୁ ମହାରଣା ଆଖିର ଲୁହ ଆଖିରେ ମାରି ବାରଶହ ବଢ଼େଇଙ୍କ କଥା ମାନିଲା, ଜାତି ଭାଇଙ୍କ କଥା ରଖିଲା ।

ଧରମା ଆଗରେ, ଏକଇରବଳା ଏକମାତ୍ର କୁଳରକ୍ଷାକାରୀ ପୁଅ ଆଗରେ, ବିଶୁ ମହାରଣା କୁଳନ୍ୟାୟ ବାଢ଼ିଲା । ବାପ ଆଖିରେ ଲୁହ ଦେଖି ଧରମାର ଥରେ ମା' ମନେ ପଡ଼ିଗଲା । କିନ୍ତୁ ତାର ଆଖିର ଲୁହ ଆଖି କୋଣରେ ମରିଗଲା । ସେ ଦମ୍ଭ ଧରିଲା, ପଣ କଲା କୁଳ ଭାଇଙ୍କି ରଖିବା ଲାଗି ସେ ମରିବ ।

ରାତି ପାହି ଆସୁଥିଲା । ଶୁଚିବନ୍ତ ହୋଇ ଧରମା ଫରିକରୁ ମାତ୍ର ଥରେ ବାପକୁ ମୁଣ୍ଡିଆ ମାରିଲା, ବାରଶହ ବଢ଼େଇଙ୍କୁ ମୁଣ୍ଡିଆ ମାରିଲା; ସମସ୍ତଙ୍କୁ କହିଲା, ଦିଅ ହରିବୋଲ ଡାକଦିଅ । ସମସ୍ତେ ମିଶି ଏକା ଥରକେ କହିଲେ "ହରିବୋଲ" ।

ଧରମା ଏକା ନିଶ୍ୱାସରେ ଦେଉଳ ଚଢ଼ି ଯାଇ ବସିଲା ଶିଖର ଉପରେ । ସୂର୍ଯ୍ୟଦେବ ପୂର୍ବ ଆକାଶରେ ଉଇଁ ଆସିଲେ । ଧରମା ସୂର୍ଯ୍ୟଙ୍କୁ ନମସ୍କାର କଲା । ତାଂର ନିହାଣ ହାତୁଡ଼ୀ ଅଣ୍ଟାରେ ଖୁଞ୍ଚି ଆସିଥିଲା । ତାକୁ ଆଗେ ଟାଣିକ ଫୋପାଡ଼ି ଦେଲା; ତା ମା'କୁ ସ୍ମରଣ କଲା, ତା ବାପକୁ ଜୁହାର କଲା, ତା କୁଳ ସଭିଙ୍କୁ ପ୍ରଣାମ କଲା, କହିଲା, "ସୂର୍ଯ୍ୟଦେବ ନମସ୍କୁତେ ।"

ନଈ ଗହ୍ୱର ଅଗାଧ ପାଣିରେ ଉବୁକନା ଗୋଟାଏ ଶବ୍ଦ ଶୁଭିଲା । କାରଣ ବଢ଼େଇଙ୍କ ହଣ୍ଡବୋଲ ଡାକ ସେଥି ଜଳକନ୍ୟାର ଡାକ ସଙ୍ଗେ ମିଶି ଗଲା । ଜଳକନ୍ୟା ମା' ଧରମାକୁ କୋଳକୁ ନେଇଗଲେ । ବଶୁ ପାଗଳ ହୋଇ ଘରକୁ ଫେରିଲା । ବଶୁ ମୁହଁରୁ ଧରମାର ଅଗାଧ ସାଗରରେ ଝାସ ଦେବାର ଶୁଣି ଧରମା ମା'ର ନାଟିକା ଛୁଡ଼ିଲା । ସେ ଦେଖିଲା ସିଏ କହିଲା, ବଶୁଟା ବାୟା ହୋଇଗଲା ।

---

ବ୍ରହ୍ମପୁର, ରଥ ପ୍ରେସ୍‌ରେ ଶ୍ରୀ ରାମଚନ୍ଦ୍ର ରଥଙ୍କଦ୍ୱାରା ମୁଦ୍ରିତ ୧୯୫୬ ।